# ଗୃହଲକ୍ଷ୍ମୀ

ପ୍ରଥମ ଭାଗ

ଶ୍ରୀ ଜଗବନ୍ଧୁ ସିଂହ

ଷଷ୍ଠ ସଂସ୍କରଣ



ପ୍ରକାଶକ

ପଣ୍ଡିତ ଶ୍ରୀ ଆକୁଳ ମିଶ୍ର କାବ୍ୟତୀର୍ଥ

ମେନେଜର, କଟକ ଟ୍ରେଡିଂ କମ୍ପାନୀ

ବାଲୁବଜାର

ପୋ. ଅ. ଗୁହଲାଚୌକ—କଟକ

୧୯୪୯



ମୂଲ୍ୟ ୨ ୧।

# ଭୂମିକା

ଲକ୍ଷ୍ମୀ ଶବ୍ଦଟି ଆବାଲବୃଦ୍ଧବନିତା ଓ ଆଚଣ୍ଡାଳବ୍ରାହ୍ମଣଙ୍କୁ ଜଣା । ଲକ୍ଷ୍ମୀଙ୍କ ନାମ ଶୁଣି ନ ଥିବା ଲୋକ ବିରଳ । ଏ ଶବ୍ଦଟି ଆମ୍ଭମାନଙ୍କର ବଡ଼ ପ୍ରିୟ ଶବ୍ଦ । ଏ ଶବ୍ଦଟିକୁ ସୃଷ୍ଟି କରିବାବେଳେ ବିଧାତା ଏଥିରେ ଏପରି ଅକ୍ଷର ସଂଯୋଗ କରିଛନ୍ତି ଯେ କେଜାଣି କାହିଁକି ଶବ୍ଦଟି କର୍ଣ୍ଣରେ ପଡ଼ିଗଲେ ମାନବର ମନରେ ଗୋଟିଏ ଦିବ୍ୟଭାବର ଉଦ୍ରେକ ହୁଏ ।

ମା ଲକ୍ଷ୍ମୀ ଅନାଥନାଥ ଜଗନ୍ନାଥବକ୍ଷଶ୍ରୀ ଓ ବରୁଣନନ୍ଦିନୀ । ଆମମାନଙ୍କ ଦେଶରେ ମା ଲକ୍ଷ୍ମୀ ସ୍ତ୍ରୀମାନଙ୍କର ପ୍ରଧାନ ପୂଜ୍ୟା ଦେବୀ । ମା ଲକ୍ଷ୍ମୀଙ୍କର ଜନ୍ମ ଗୁରୁବାର ଦିନ, ସୁତରାଂ ଗୁରୁବାରଟି ଲକ୍ଷ୍ମୀବାର । ପୁଣି ମାଘ, କାର୍ତ୍ତିକ, ବୈଶାଖ ମାସରେ ଶୁକ୍ଳପକ୍ଷ ଗୁରୁବାର ଦିନ ଦଶମୀ ତିଥି ସଂଯୋଗ ହେଲେ ସୁଦଶାବ୍ରତ ପଡ଼େ । ମାର୍ଗଶିର ମାସର ଗୁରୁବାର ମାଣବସା ଗୁରୁବାର । ଏ ଦିନ ଘରେ ଘରେ ଲକ୍ଷ୍ମୀପୂଜା, ଲକ୍ଷ୍ମୀଙ୍କ ମାହାତ୍ମ୍ୟ କୀର୍ତ୍ତନ, ନାନାପ୍ରକାର ପିଠାପଣା କରି ନୈବେଦ୍ୟ ପ୍ରଦାନ କରାଯାଏ । ବୁଧବାର ଗୁରୁବାର ଲକ୍ଷ୍ମୀଙ୍କ ବାର ବୋଲି ସ୍ତ୍ରୀଲୋକମାନେ କାଳିଅନ୍ଧାରରୁ ଶଯ୍ୟା ତ୍ୟାଗ କରି ଘରଦ୍ୱାରମାନ ପରିଷ୍କାର ପରିଚ୍ଛନ୍ନ କରି ଗୋମୟ ଲେପନ କରନ୍ତି । ଗୃହ ମଧ୍ୟରେ କୌଣସି ଅନାଚାର କାର୍ଯ୍ୟ କଲେ ଲକ୍ଷ୍ମୀ ଅସନ୍ତୁଷ୍ଟ ହୋଇ ଚାଲିଯିବେ, ପୁରୁଷ କଚ୍ଛରୁ ଲକ୍ଷ୍ମୀ ତୁଟିଯିବେ, ସ୍ତ୍ରୀ ଅଲକ୍ଷଣୀ ହେବା କଥା ପ୍ରତ୍ୟେକ ମୁହଁରୁ ଶୁଣାଯାଏ । ଲକ୍ଷ୍ମୀ ବୁଧବାର ଗୁରୁବାର ଦିନ

ପ୍ରାତଃକାଳରୁ ନଗର ଭ୍ରମଣ କରି ଆଚଣ୍ଡାଳବ୍ରାହ୍ମଣ ସମସ୍ତଙ୍କ ଗୃହକୁ ଯାଆନ୍ତି ବୋଲି ଆମ ଦେଶରେ କଥା ଅଛି । ଏହିହେତୁରୁ ସେ ଦୁଇ ଦିନ କେହି ନ ଉଠୁଣୁ ଦ୍ୱାର ଘର ପରିଷ୍କାର ପରିଚ୍ଛନ୍ନ କରା ହୁଏ । ମା ଲକ୍ଷ୍ମୀ ଜଗତର ପଦ୍‌ଦାତ୍ରୀ । ଲକ୍ଷ୍ମୀ ଟିକିଏ ଆଖି ପକାଇ ଦେଲେ କାହାର ପାଲିଙ୍କି ଉପରେ ପାଟଛତା, କାହାକୁ ଟିକିଏ ଆଡ଼ ଆଖିରେ ନ ଚାହିଁଲେ କଏ ତା ପଥର ଭିକାରି ହୁଏ । ଲକ୍ଷ୍ମୀ ପୁଣି ବଡ଼ ଚଞ୍ଚଳା । ଚଞ୍ଚଳା ଲକ୍ଷ୍ମୀଙ୍କର ଅପର ନାମ, ଅର୍ଥାତ୍ ଲକ୍ଷ୍ମୀଙ୍କି ଆୟତ୍ତ କରି ରଖି ନ ପାରିଲେ ସେ ସ୍ଥିର ହୋଇ ରହି ପାରନ୍ତି ନାହିଁ । ଲକ୍ଷ୍ମୀଙ୍କି ଆୟତ୍ତ କରି ରଖି ପାରିବ କିଏ ? " ଉଦ୍‌ଯୋଗିନଂ ପୁରୁଷସିଂହମୁପୈତି ଲକ୍ଷ୍ମୀଃ " ଅର୍ଥାତ୍ ଉଦ୍‌ଯୋଗୀ ପୁରୁଷସିଂହ କେବଳ ଲକ୍ଷ୍ମୀଙ୍କି ନିଜ ଆୟତ୍ତରେ ରଖିପାରେ । ଲକ୍ଷ୍ମୀ ଆଳସ୍ୟପରାୟଣା ନୁହନ୍ତି; ସୁତରାଂ ଅଳସୁଆ ଲୋକ ଲକ୍ଷ୍ମୀଙ୍କି ଆୟତ୍ତ କରିପାରେ ନାହିଁ । ଆଳସ୍ୟପରାୟଣ ଲୋକମାନେ ନିର୍ଦ୍ଧନ ହେବାର ଦେଖାଯାଏ ।

ଜଗନ୍ନାଥବଲ୍ଲଭୀ ମା ଲକ୍ଷ୍ମୀ ସ୍ୱହସ୍ତରେ ପାକ ନ କଲେ ଜଗନ୍ନାଥଙ୍କର ମନୋଜ୍ଞ ହୁଏ ନାହିଁ ବୋଲି ପ୍ରବାଦ ଅଛି । ଭକ୍ତମାନଙ୍କର ବିଶ୍ୱାସ, ବଡ଼ ଦେଉଳ ରୋଷଘରେ ଯେଉଁ ପାକ ହୁଏ ତାହା ଲକ୍ଷ୍ମୀପାକ । ଗୁଣ୍ଡିଚାଯାତ୍ରାବେଳେ ଜଗନ୍ନାଥ ଗୁଣ୍ଡିଚା ଘରକୁ ଯାଆନ୍ତି । ଗୁଣ୍ଡିଚାଘରେ ଯେଉଁ ପାକ ହୁଏ ତାହା ଲକ୍ଷ୍ମୀପାକ ନୁହେ ବୋଲି ବିଶ୍ୱାସ, କାରଣ ଲକ୍ଷ୍ମୀ ଗୁଣ୍ଡିଚାଘରକୁ ଯାଇ ନ ଥାନ୍ତି । ଆଉ ଏ କଥା ଦେଖାଯାଏ ଯେ ଜଗନ୍ନାଥ ଗୁଣ୍ଡିଚାଘରକୁ ଯାଇଥିଲାବେଳେ ଲକ୍ଷ୍ମୀଙ୍କ ମୋହନରେ ଡାଲିଅ ରୁଉଳ, କଳମଶାଗ ରଖା ହୋଇଥାଏ; ଅର୍ଥାତ୍ ସ୍ୱାମୀଙ୍କ ଅନୁପସ୍ଥିତିରେ ସ୍ତ୍ରୀର ଏହିପରି ବିଳାସବର୍ଜିତ ଖାଦ୍ୟ ।

ସ୍ତ୍ରୀମାନଙ୍କର ମା ଲକ୍ଷ୍ମୀ ପ୍ରଧାନ ଉପାସ୍ୟ ଦେବତା । ଏ ପର୍ଯ୍ୟନ୍ତ ସ୍ତ୍ରୀମାନେ ମା ଲକ୍ଷ୍ମୀଙ୍କ ପୂଜା ଛାଡ଼ି ନାହାନ୍ତି, ଏ ପର୍ଯ୍ୟନ୍ତ ମା ଲକ୍ଷ୍ମୀଙ୍କ ଆଦର୍ଶ ଚରିତ୍ର ସ୍ତ୍ରୀମାନଙ୍କ ମନରେ ଭକ୍ତିମିଶ୍ରିତ ଭୟ ଉତ୍ପାଦନ କରି ପାରିବାକୁ ସକ୍ଷମ ଅଛି । ମା ଲକ୍ଷ୍ମୀ ଆଦର୍ଶ ହିନ୍ଦୁ ଗୃହିଣୀ । ଲକ୍ଷ୍ମୀପୂଜା ଆଜିପର୍ଯ୍ୟନ୍ତ ଗୃହେ ଗୃହେ ଅନୁଷ୍ଠିତ ହେଉଛି । ହିନ୍ଦୁ ରମଣୀମାନେ ଏକାବେଳକେ ଅଲକ୍ଷ୍ମୀର ବଶୀଭୂତ ହୋଇ ନାହାନ୍ତି, କିନ୍ତୁ ବର୍ତ୍ତମାନ ଯେଉଁ ଉଚ୍ଚଶିକ୍ଷା ସ୍ତ୍ରୀମାନଙ୍କୁ ଦିଆ ଯାଉଛି ତାହା ଫଳରେ ଆଉ ଲକ୍ଷ୍ମୀ ପୂଜାରେ ବିଶ୍ୱାସ ରହିବ କି ନା ଏ ଘୋର ସନ୍ଦେହର କଥା । ମାତ୍ର ଯେତେବେଳେ ହିନ୍ଦୁ ରମଣୀ ଏ ଆଦର୍ଶ ଆଗରେ ରଖି କାର୍ଯ୍ୟ କରିବାକୁ କୁସଂସ୍କାର ବୋଲି ମନେ କରିବେ, ସେତେବେଳେ ହିନ୍ଦୁ ରମଣୀର ହିନ୍ଦୁତ୍ୱ ଲୋପ ହେବ ଏବଂ ଭାରତ ଅଲକ୍ଷ୍ମୀମାନଙ୍କର ବିହାର ଭୂମିରେ ପରିଣତ ହେବ । ଯେଉଁ ଜାତିର ଆଦର୍ଶ ଚରିତ୍ର ନାହିଁ, ସେ ଜାତି ଅନ୍ଧାରଘରେ ପଶି କେବଳ ଦରାଣ୍ଡି ହେବ, କିଛିମାତ୍ର ବାଞ୍ଛିତ ଫଳ ପାଇବ ନାହିଁ ।

ଲକ୍ଷ୍ମୀଙ୍କ ଚରିତ୍ରରୁ ସ୍ତ୍ରୀମାନଙ୍କର ଅନେକ କଥା ଶିଖିବାର ଅଛି । ଲକ୍ଷ୍ମୀ ପୂଜାର ଉଦ୍ଦେଶ୍ୟ ମହତ୍ । ଲକ୍ଷ୍ମୀପୂଜା କେବଳ ଖିରିପିଠାଖିଆ ପର୍ବ ନୁହେ । ଯେଉଁମାନେ ଲକ୍ଷ୍ମୀପୂଜାକୁ ଏହି ଦୃଷ୍ଟିରେ ଦେଖନ୍ତି, ସେମାନଙ୍କ ଲକ୍ଷ୍ମୀପୂଜା କରିବାରେ କିଛି ଫଳ ନାହିଁ । ବ୍ରତ କରନ୍ତି କାହିଁକି ? ବ୍ରତ ଅର୍ଥ ପ୍ରତିଜ୍ଞା । ଲକ୍ଷ୍ମୀବ୍ରତ କରିବା ଅର୍ଥ ଲକ୍ଷ୍ମୀଙ୍କର ଆଦର୍ଶ ଜୀବନକୁ ଅନୁକରଣ କରିବା ଲାଗି ପ୍ରତିଜ୍ଞା କରିବା । ପ୍ରତିଜ୍ଞା କରି କିମ୍ବା ବ୍ରତ ଧାରଣ କରି ଯେଉଁମାନେ ତଦନୁସାରେ କାର୍ଯ୍ୟ କରନ୍ତି, ସେହିମାନେ କେବଳ ବ୍ରତର ଫଳ ପାନ୍ତି । ଅନ୍ୟଥା ବ୍ରତ ପଣ୍ଡ ହୁଏ ଏବଂ ଲୋକ ପାପଭାଗୀ ହୁଏ ।

ଅଜ୍ଞାନକୃତ ପାପର କ୍ଷମା ଥାଇପାରେ ମାତ୍ର ଜ୍ଞାନକୃତ ପାପର କ୍ଷମା ନାହିଁ ।

ମା ଲକ୍ଷ୍ମୀଙ୍କ ଚରିତ୍ରରୁ ପ୍ରଥମେ ଦୟା ଶିକ୍ଷା କରିବାକୁ ହେବ । ମା ଲକ୍ଷ୍ମୀ ବଡ଼ଘର ଝିଅ, ବ୍ରହ୍ମାଣ୍ଡଠାକୁରଙ୍କ ପତ୍ନୀ; ମାତ୍ର ସେ ଗର୍ବ ତାଙ୍କ ମନରେ ନ ଥାଏ । ମା ଦୟା କରି ଚଣ୍ଡାଳ ଦ୍ୱାରକୁ ଯାଇ ତାର ଦୁଃଖାପନୋଦନ କରିବାକୁ ସୁଖ ମନେ କରନ୍ତି । ଶ୍ରୀୟା ଚଣ୍ଡାଲୁଣୀ ଘରଠାକୁ ମା ଲକ୍ଷ୍ମୀ ଯାଇଥିବାରୁ ତାଙ୍କ ଦେଢ଼ଶୁର ମହା ବିରକ୍ତ ହୋଇ ଲକ୍ଷ୍ମୀପରି ଭାର୍ଯ୍ୟାର ମୁଖାବଲୋକନ ନ କରିବା ଏବଂ ତାଙ୍କୁ ଗୃହରୁ ବାହାର କରିଦେବାଲାଗି କନିଷ୍ଠ ଭାଇଙ୍କି ପରାମର୍ଶ ଦେଇଥିଲେ; ମାତ୍ର ଶେଷରେ ଲକ୍ଷ୍ମୀ ଜୟୀ ହେଲେ । ଲକ୍ଷ୍ମୀଙ୍କ ଅନୁପସ୍ଥିତରେ ଏମାନଙ୍କୁ ଖାଇବାକୁ ମିଳିଲା ନାହିଁ; ସୁତରାଂ ଲକ୍ଷ୍ମୀ ବଡ଼ଘର ଝିଅ ହୋଇ ମଧ୍ୟ ଦୀନ ଦୁଃଖୀମାନଙ୍କ ଘରକୁ ଯାଇ ସେମାନଙ୍କ କଷ୍ଟ ମୋଚିବା କାର୍ଯ୍ୟଟା ଅଳ୍ପ ଭବିଷ୍ୟତକୁ ଦୋଷାବହ ହେଲା ନାହିଁ । ସୁତରାଂ ଯେଉଁମାନେ ଲକ୍ଷ୍ମୀଙ୍କ ପୂଜା କରନ୍ତି ଏବଂ ଲକ୍ଷ୍ମୀବ୍ରତ କରନ୍ତି ସେ ରମଣୀମାନେ ଯେତେ ବଡ଼ ଘରର ଝିଅ ବୋହୂ ହୁଅନ୍ତୁ ନା କାହିଁକି ମନରେ "ମୁଁ ବଡ଼ ଗର୍ବ ନ କରି ଦୀନ ଦୁଃଖୀ, ଆତ୍ମୀୟ ସ୍ୱଜନବର୍ଗ, ସାଇପଡ଼ିଶା, ଗ୍ରାମବାସୀ ଦେଶବାସୀ ଯେ କୌଣସି ଲୋକର ଦୁରବସ୍ଥା ଦେଖିଲେ ଆପଣା ସାଧ୍ୟାନୁସାରେ ଯତ୍‌କିଞ୍ଚିତ ଦେଇ ତାର କଷ୍ଟ ଅପନୋଦନ କରିବା ପ୍ରଧାନ କର୍ତ୍ତବ୍ୟ ବୋଲି ମନେ କରିବା ଉଚିତ । ଅନେକ ସ୍ତ୍ରୀ-ଲୋକଙ୍କଠାରେ ଏ ଗୁଣ ଦେଖାଯାଏ । ଅନେକ ସମୟରେ ଅନେକ ଲୋକଙ୍କ ତୁଣ୍ଡରୁ ଶୁଣାଯାଏ, ଅମୁକ ସ୍ତ୍ରୀଟି ଚଢ଼େଇର ପେଟବ୍ୟଥା ଜାଣେ, ଅମୁକ ସ୍ତ୍ରୀଟି ଆପଣା ପେଟ ମୁଣ୍ଡ ମାରି ଭୋକୀ ଶୋଷିଙ୍କ

କଥା ହୁଏ । ଅମୁକ ସ୍ତ୍ରୀଠି ସାକ୍ଷାତ୍ ଲକ୍ଷ୍ମୀ ଅର୍ଥାତ୍ ଯେଉଁ ସ୍ତ୍ରୀମାନେ ଏପରି କାର୍ଯ୍ୟ କରନ୍ତି ସେମାନଙ୍କ ପ୍ରତି ଲକ୍ଷ୍ମୀ ବରଦାୟିକା ହୁଅନ୍ତି ଏବଂ ସେମାନେ ପ୍ରକୃତରେ ଗୃହଲକ୍ଷ୍ମୀ ।

ମା ଲକ୍ଷ୍ମୀ ସୂର୍ଯ୍ୟୋଦୟ ପୂର୍ବରୁ ଶଯ୍ୟା ତ୍ୟାଗ କରି ଆପଣା ନିତ୍ୟକର୍ମ ସାରି ପ୍ରଥମେ ଅନ୍ୟମାନଙ୍କ ଅବସ୍ଥା ପରିଦର୍ଶନ କରି ଆସନ୍ତି; ସୁତରାଂ ସ୍ତ୍ରୀମାନଙ୍କର ଉଚିତ ଯେ ସେମାନେ ସେହିପରି କାଳିଅନ୍ଧାରରୁ ଶଯ୍ୟା ତ୍ୟାଗ କରି ଆପଣା ନିତ୍ୟକର୍ମ ସାରି ଘରଦ୍ୱାର ପରିଷ୍କାର କରିବେ ବା କରାଇବେ । ଦକ୍ଷିଣ ଅଞ୍ଚଳରେ ସ୍ତ୍ରୀମାନେ ଠିକ୍ ଏହିପରି କରନ୍ତି—ରାତି ପାହିଲା ବେଳକୁ ଦେଖିବ ଘରଦ୍ୱାର ଲିପାପୋଛା କରି ଦ୍ୱାର ମାନଙ୍କରେ ମୁରୁଜ ଦିଆ ଯାଇଥିବ । ମୁଁ ଏ କଥା ସ୍ୱଚକ୍ଷୁରେ ଦେଖିଛି । ଆଳସ୍ୟ ସ୍ତ୍ରୀମାନଙ୍କ ପକ୍ଷରେ ଶୋଭନୀୟ ନୁହେ । ଆଳସ୍ୟପରାୟଣା ସ୍ତ୍ରୀମାନେ ଦିନ ପ୍ରହରକ ଯାଏ ଶଯ୍ୟା ତ୍ୟାଗ କରନ୍ତି ନାହିଁ । କର୍ତ୍ତବ୍ୟ କାର୍ଯ୍ୟ ବାକି ପଡ଼ିଥାଉ ଚଳୁଟକ ଏଠି ଠିଆ ସେଠି ଠିଆ, ଦୁଇପ୍ରହର ଦିନଯାଏ ଅଗାଧୁଆ ଅପାଧୁଆ, ଦାନ୍ତ ଅଘଷାରେ ଥାଇ ପର ନିନ୍ଦା, ପର ଛିଦ୍ର, ଯା ସହିତ କଳି ତା ସହିତ କଳି । ଜଣେ ଜଣେ ଅଛନ୍ତି କାହା ରି ସହିତ କଳି କରିବାକୁ ସୁଯୋଗ ନ ମିଳିଲେ ଗୁଳକୁ ବାଡ଼କୁ ଅନାଇ କଳି କରନ୍ତି, ଏଗୁଡ଼ିକ ଅଲକ୍ଷ୍ମୀ ପ୍ରବୃତ୍ତିବୋଧକ କାର୍ଯ୍ୟ । ଏଥିରେ ଲକ୍ଷ୍ମୀ ଅସନ୍ତୁଷ୍ଟ ହୁଅନ୍ତି, ଲକ୍ଷ୍ମୀ ବରଦାୟିକା ହୁଅନ୍ତି ନାହିଁ; ସୁତରାଂ ଲକ୍ଷ୍ମୀ ଯେଉଁ କାର୍ଯ୍ୟଦ୍ୱାରା ସନ୍ତୁଷ୍ଟ ହେବେ ସେପରି କାର୍ଯ୍ୟ ସ୍ତ୍ରୀମାନଙ୍କର କର୍ତ୍ତବ୍ୟ । ମା ଲକ୍ଷ୍ମୀ ନଗର ଭ୍ରମଣ ଲାଗି ବାହାରିବା ପୂର୍ବରୁ ଗୃହଲକ୍ଷ୍ମୀମାନେ ଆପଣା ଗୃହ ପରିଷ୍କାର ପରିଚ୍ଛନ୍ନ ନ ରଖିଥିଲେ ମା ସେ ଗୃହକୁ ଆସନ୍ତି ନାହିଁ; କାରଣ ଅପରିଷ୍କାର ସ୍ଥାନ

ଲକ୍ଷ୍ମୀଙ୍କର ଅଗନ୍ତବ୍ୟ ସ୍ଥାନ । ରମଣୀମାନେ ଏହି ବିଶ୍ୱାସ ରଖିଲେ
ଅଉ କର୍ତ୍ତବ୍ୟ କାର୍ଯ୍ୟରେ ତ୍ରୁଟି କରିବେ ନାହିଁ ।

ମା ଲକ୍ଷ୍ମୀ ବଡ଼ଘର ଝିଅ ବଡ଼ଘର ବୋହୂ, ମାତ୍ର ସ୍ୱହସ୍ତରେ ପାକ କରି ଆପଣାର ସ୍ୱାମୀ ଏବଂ ପୋଷ୍ୟବର୍ଗଙ୍କୁ ଭୋଜନ କରାଇବାକୁ ସୁଖ ମନେ କରନ୍ତି । ପୂଜାହାରୀ ବ୍ରାହ୍ମଣୀ, ନାଟୀ ଇତ୍ୟାଦି ପାଚକ ପାଚିକା ମା ଲକ୍ଷ୍ମୀଙ୍କି ଅପ୍ରାପ୍ତ ହେବ ନାହିଁ । ଯେ ଭଣ୍ଡାରର ମାଲିକ ତାକୁ କଣ ଦଶପାଞ୍ଚଟା ପାଚକ ପାଚିକା ରଖିବା ଗୋଟାଏ ବଡ଼ କଥା । ମାତ୍ର ମା ଲକ୍ଷ୍ମୀ ସେପରି କରନ୍ତି ନାହିଁ ବା ସେପରି କରିବା କର୍ତ୍ତବ୍ୟ ନୁହେଁ । ସ୍ୱାମୀ ସ୍ତ୍ରୀର ଦେବତା । ସ୍ୱହସ୍ତରେ ପାକ କରି ସ୍ୱାମୀ ଅର୍ଥାତ୍ ଆପଣାର ଦେବତାକୁ ଭୋଗ ଲଗାଇବାଠାରୁ ବଳି ଆନନ୍ଦଜନକ କାର୍ଯ୍ୟ ଅଉ କଣ ଅଛି ? ମା ଲକ୍ଷ୍ମୀଙ୍କ ଚରିତ୍ରରୁ ସ୍ତ୍ରୀମାନେ ଏ କଥାଟି ଶିକ୍ଷା କରିବା ନିତାନ୍ତ ଅବଶ୍ୟକ । ଉପନ୍ୟାସ ପଢ଼ିବା, ଖଟରେ ବସିବା ସ୍ତ୍ରୀର କର୍ତ୍ତବ୍ୟ ନୁହେଁ । ମାତ୍ର ଆଜିକାଲି ଯେଉଁ ନବଶିକ୍ଷିତା ଉଗ୍ରଚଣ୍ଡୀମାନେ ଦେଖାଯାନ୍ତି ସେମାନେ ରନ୍ଧନ କାର୍ଯ୍ୟକୁ ଘୃଣା କଲେଣି । ସର୍ବଦା ମନେ ହୁଏ କାଳେ ହାତରେ କଳା ଲାଗିଯିବ, ଲୁଗା ମଇଳା ହୋଇଯିବ, ଚୂଲି ଫୁଙ୍କିଲେ ଆଖିରେ ଧୂଆଁ ବାଜିବ; ସୁତରାଂ ସ୍ୱାମୀ ଛ ଟଙ୍କା ଦରମାରେ ଗୃହସ୍ଥ କଲେ ବି ସ୍ତ୍ରୀ କହେ ଜଣେ ପୂଜାହାରୀ ନ ହେଲେ ଚଳିବ ନାହିଁ । ନିଜ ହାତରେ ରାନ୍ଧିବା ତ ଦୂରର କଥା, ପୂଜାହାରୀ କଣ ରାନ୍ଧିଲା ନ ରାନ୍ଧିଲା, ଭଲ ରାନ୍ଧିଲା କି ମନ୍ଦ ରାନ୍ଧିଲା, ସେ କଥାର ତତ୍ତ୍ୱ ନେବାକୁ ସୁଦ୍ଧା ସ୍ତ୍ରୀମାନେ କଷ୍ଟ ମନେ କଲେଣି । ସକଳ କର୍ମ ମଧ୍ୟରେ ରନ୍ଧନ ପ୍ରଧାନ କର୍ମ; କାରଣ ରନ୍ଧନ ନ ହେଲେ ଖାଇବା କଣ ? ନ ଖାଇଲେ ଜୀବନଧାରଣ କରିବା କିପରି ? ପୁଣି ଆମ୍ଭମାନଙ୍କ ଖାଦ୍ୟ

ଦ୍ରବ୍ୟ ଖାଇବା ପୂର୍ବରୁ ଇଷ୍ଟଦେବଙ୍କୁ ସମର୍ପିତ ହୋଇଥାଏ । ସୁତରାଂ ଖାଦ୍ୟପଦାର୍ଥଗୁଡ଼ିକ ଯେତେ ପବିତ୍ରଭାବରେ ରନ୍ଧା ହୁଏ, ତେତେ ସ୍ୱାସ୍ଥ୍ୟ ପକ୍ଷରେ ମଙ୍ଗଳଜନକ । "ଅନ୍ନମିଦଂ ବ୍ରହ୍ମ ।" ଏପରି ଯେଉଁ ଖାଦ୍ୟପଦାର୍ଥ, ଯାହା ଉପରେ ଅସ୍ମମାନଙ୍କ ସ୍ୱାସ୍ଥ୍ୟ ଓ ଜୀବନ ନିର୍ଭର କରେ, ତାକୁ ପ୍ରସ୍ତୁତ କରିବାଲାଗି ଅଜ୍ଞ ଚଞ୍ଚଳଶୀଳ ଚାକରାଣୀଙ୍କ କ୍ଷମତାପନ୍ନ ଦେଇ ଆପେ ନିଶ୍ଚିନ୍ତ ହୋଇ ବସିବାଟା ଉଚିତ କି ? ଆପଣା କଥା ଆପେ ବୁଝିବ କିମ୍ବା ଆପଣାର ନିତାନ୍ତ ଆତ୍ମୀୟ ଲୋକ ବୁଝିବ । ସ୍ତ୍ରୀଠାରୁ ବଳି ପୁରୁଷର ଆଉ ଅଧିକ ଆତ୍ମୀୟ କିଏ ? ସୁତରାଂ ଆଦର୍ଶ ରମଣୀ ସ୍ୱହସ୍ତରେ ରନ୍ଧନ କରି ଆପଣା ସ୍ୱାମୀ, ପରିବାରବର୍ଗ ଓ ଅତିଥି ଅଭ୍ୟାଗତମାନଙ୍କୁ ଭୋଜନ କରାଇ ପାରିଲେ ଆପଣାକୁ କୃତ୍ୟ କୃତ୍ୟ ମନେ କରୁଥିଲେ ଏବଂ ଏ କାର୍ଯ୍ୟକୁ ପରମ ଧର୍ମ୍ମ କାର୍ଯ୍ୟ ବୋଲି ବିଶ୍ୱାସ କରୁଥିଲେ । ମାତ୍ର ଏ ବିଶ୍ୱାସ ଯେପରି କମେ ଊଣା ହୋଇ ଆସୁଛି, କମେ ଗୃହମାନ ଅଲକ୍ଷ୍ମୀର ଆବାସରେ ପରିଣତ ହେଉଛି । ସୁତରାଂ ଯେଉଁମାନେ ଲକ୍ଷ୍ମୀବ୍ରତ କରନ୍ତି ଅଥଚ ଏତିକ କରନ୍ତି ନାହିଁ, ସେମାନେ ମା ଲକ୍ଷ୍ମୀଙ୍କ ଅବମାନନା କରନ୍ତି । ସ୍ତ୍ରୀମାନେ ଜନନୀ, ପୁରୁଷମାନେ ସେମାନଙ୍କର ସନ୍ତାନ । ଜନନୀର ପ୍ରଧାନ କାର୍ଯ୍ୟ ସନ୍ତାନ ପ୍ରତିପାଳନ । ଏ କାର୍ଯ୍ୟ ଊଣା ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ନୁହେ । ସ୍ତ୍ରୀମାନେ ଅପ୍ସରା ସାଜି ପୁରୁଷମାନଙ୍କର ଅଳଙ୍କାର ହେବା ଉଦ୍ଦେଶ୍ୟରେ ସୃଷ୍ଟ ନୁହନ୍ତି । ବୈଠକଖାନା ସଜାଇବା ଲାଗି ସ୍ତ୍ରୀମାନେ ସୃଷ୍ଟ ହୋଇ ନାହାନ୍ତି । ପୁରୁଷରେ ଇନ୍ଦ୍ରିୟ ଲାଳସା ଚରିତାର୍ଥ କରିବା ଲାଗି ସ୍ତ୍ରୀ ସୃଷ୍ଟ ହୋଇ ନାହିଁ । ସ୍ତ୍ରୀ ଗୃହଲକ୍ଷ୍ମୀ, ଅର୍ଦ୍ଧାଙ୍ଗିନୀ, ସହଧର୍ମିଣୀ, ଜୀବନସଙ୍ଗିନୀ, ଜଗଜ୍ଜନନୀ ଇତ୍ୟାଦି ବହୁ ନାମରେ ପରିଚିତା; ମାତ୍ର କୌଣସି ଶବ୍ଦରୁ ବିଳାସିନୀର ପରିଚୟ ମିଳେ ନାହିଁ । ସ୍ତ୍ରୀ ସହିତ ପବିତ୍ର ଭାବ ସଂଯୁକ୍ତ ଅଛି ।

ସୁତରାଂ ଜଗନ୍ନାଥବଲ୍ଲଭା, ଜଗଜ୍ଜନନୀ ମା ଲକ୍ଷ୍ମୀ ସମସ୍ତଙ୍କର ପୂଜ୍ୟା । ସୁତରାଂ ତାଙ୍କ ଚରିତକୁ ଅନୁକରଣ କରିବା ପ୍ରତ୍ୟେକ ସ୍ତ୍ରୀର କର୍ତ୍ତବ୍ୟ । ଯେଉଁମାନେ ସେପରି ନ କରନ୍ତି ସେଗୁଡ଼ାକ ପ୍ରକୃତ ରମଣୀପଦବାଚ୍ୟା ନୁହନ୍ତି । ସେମାନଙ୍କୁ ରାକ୍ଷସୀ, ଉଗ୍ରଚଣ୍ଡୀ, ବାରବିଳାସିନୀ, ଅଲକ୍ଷ୍ମୀ କହିଲେ ଚଳେ ।

ଜଗନ୍ନାଥ ଗୁଣ୍ଡିଚା ମନ୍ଦିରକୁ ଗଲେ ଲକ୍ଷ୍ମୀଙ୍କ ଭୋଜନରେ ଯେ ଦାଲୁଅ ଚୂଡ଼ଲ କଳମଶାଗ ପଡ଼ିଥାଏ, ସେଥିରୁ ସ୍ତ୍ରୀମାନଙ୍କର ଅନେକଗୁଡ଼ିଏ ଶିଖିବାର ବିଷୟ ଅଛି । ସ୍ତ୍ରୀମାନେ ସ୍ୱାମୀ ଅନୁପସ୍ଥିତରେ କି ପ୍ରକାର ଚଳିବେ, ଦାଲୁଅ ଚୂଡ଼ଲ କଳମଶାଗ ତାହା ନିଦର୍ଶନ । ସ୍ୱାମୀ ଅନୁପସ୍ଥିତରେ ସ୍ତ୍ରୀର ବେଶଭୂଷା ନିଷେଧ, ଭଲ ଖାଇବା, ଭଲ ପିନ୍ଧିବା ନିଷେଧ, ଭଲ ଶଯ୍ୟା ନିଷେଧ, ସ୍ଥୂଳତଃ ବିଳାସବ୍ୟଞ୍ଜକ ସକଳ ପ୍ରକାର ଦ୍ରବ୍ୟର ବ୍ୟବହାର ନିଷେଧ । ପତିବ୍ରତା ସ୍ତ୍ରୀମାନଙ୍କର ଏହାହିଁ ଧର୍ମ । ପତିବ୍ରତାମାନଙ୍କର ସ୍ୱାମୀହିଁ ସର୍ବସୁଖର ମୂଳ, ସ୍ୱାମୀସୁଖରେ ସେମାନେ ସୁଖିନୀ ଓ ସ୍ୱାମୀ ଦୁଃଖରେ ଦୁଃଖିନୀ ।

ସୁତରାଂ ସ୍ୱାମୀସଙ୍ଗ ବିଚ୍ଛେଦ ହେଲେ ପତିବ୍ରତାର ଆଉ ସୁଖ ରହିଲା କେଉଁଠାରେ ? ଏହି ହେତୁ ସ୍ୱାମୀବିରହିଣୀ ପତିବ୍ରତା ନାରୀ ସକଳ ସୁଖବିବର୍ଜ୍ଜିତା ହୋଇ ଅନ୍ୟ ପୋଷ୍ୟବର୍ଗଙ୍କ ସେବାରେ ନିଯୁକ୍ତା ଥାଏ । ଏହି ବିଚ୍ଛେଦ ବେଳେ ଶାକାନ୍ନହିଁ ପତିବ୍ରତାର ପ୍ରଧାନ ଖାଦ୍ୟ । ସୁତରାଂ ମା ଲକ୍ଷ୍ମୀ ବଡ଼ଘର ଝିଅ ବୋହୂ ହୋଇ ସୁଦ୍ଧା ପତିବିଚ୍ଛେଦରୂପ ଦୁଃଖ ସମୟରେ ସକଳ ସୁଖ ପରିତ୍ୟାଗ କରି କେବଳ ଶାକାନ୍ନ ଭୋଗ ପାନ୍ତି । ଚୂଡ଼ଲ ପୁଣି ଉତ୍ତମ ସରୁ ଚୂଡ଼ଲ ନୁହେଁ । ଦାଲୁଅ ଚୂଡ଼ଲ ଅତି ମୋଟା ଓ ଖରାପ । ଶାଗ

ମଧ୍ୟରେ କଳମ ଶାଗ । ପଞ୍ଚଭକ୍ତର ଏ ଚୂଡ଼ାନ୍ତ ଆଦର୍ଶ । ଯେଉଁମାନେ ଲକ୍ଷ୍ମୀଙ୍କି ପୂଜା କରନ୍ତି, ସେମାନେ ମା ଲକ୍ଷ୍ମୀଙ୍କ ଚରିତରୁ ଏହି ଆଦର୍ଶ ଶିକ୍ଷା କରିବେ ।

ଲକ୍ଷ୍ମୀଙ୍କର ଅନ୍ୟ ନାମ ଅନ୍ନପୂର୍ଣ୍ଣା । ଲକ୍ଷ୍ମୀ ଗୃହ ସଂସାରର କର୍ତ୍ତ୍ରୀ । ଅତିଥି ଅଭ୍ୟାଗତ ଓ ଗୃହର ପୋଷ୍ୟବର୍ଗଙ୍କ ଖାଦ୍ୟପେୟ କଥା ବୁଝିବାର ଭାର ମା ଲକ୍ଷ୍ମୀଙ୍କ ଉପରେ । ମା ଲକ୍ଷ୍ମୀ ପ୍ରତ୍ୟେକ ପ୍ରାଣୀର ଖାଇବା କଥା ବୁଝନ୍ତି । ମା ଲକ୍ଷ୍ମୀ ତାଙ୍କ କର୍ତ୍ତବ୍ୟ ନ କଲେ ସମସ୍ତେ "ହା ଅନ୍ନ, ହା ଅନ୍ନ" ହୋଇ ମରିଯିବେ । ଖାଦ୍ୟ ଜୀବନ ଧାରଣର ପ୍ରଧାନ ସାମଗ୍ରୀ, ଅନ୍ନହିଁ ଜୀବବ୍ରହ୍ମ । ସୁତରାଂ ଜୀବନ ନାଟିକା ଯାହା ହାତରେ ଦିଆ ଯାଇଛି ତାର ସମ୍ମାନ ଓ ମର୍ଯ୍ୟାଦା ଊଣା ନୁହେ ।

ସୁଦଶାବ୍ରତ ଦିନ ସ୍ତ୍ରୀଲୋକମାନେ ଗୋଟିଏ ଲେଖାଏଁ ବ୍ରତ ଧାରଣ କରନ୍ତି, କଥାରେ ଏହାକୁ ବରତ କହନ୍ତି । ବ୍ରତ ସୂତ୍ରଦ୍ୱାରା ନିର୍ମିତ ହୋଇ ଡାହାଣ ବାହୁରେ ବନ୍ଧା ହୁଏ । ଏ ବ୍ରତରେ ଦଶଗୋଟି ଗଣ୍ଠି ଦିଆ ଯାଇଥାଏ । ଗଣ୍ଠି ଅର୍ଥ ବନ୍ଧନ । ଦଶଗୋଟି ଗଣ୍ଠି ଦିଆଯାଏ କାହିଁକି ? ଧର୍ମର ଦଶଗୋଟି ଲକ୍ଷଣ ଅଛି; ଅର୍ଥାତ୍ ଦଶଗୋଟି ଲକ୍ଷଣ ଧର୍ମର ଚିହ୍ନ, ଯଥା—ସନ୍ତୋଷ, କ୍ଷମା, ଦମ, ଶୌଚ, ଜ୍ଞାନ, ବିଦ୍ୟା, ସତ୍ୟ, ଅକ୍ରୋଧ, ଇନ୍ଦ୍ରିୟ-ନିଗ୍ରହ ଓ ସଂଯମ ।

ଯେଉଁମାନେ ଏହି ଦଶ ଲକ୍ଷଣବିଶିଷ୍ଟ କର୍ମମାନ କରନ୍ତି, ସେମାନଙ୍କୁ ଧର୍ମୀ ବୋଲି କୁହାଯାଏ । ସୁତରାଂ ଦଶଗଣ୍ଠି ଧର୍ମର ଦଶ ଲକ୍ଷଣର ପରିଚାୟକ । ଦଶଗୋଟି ଗଣ୍ଠି ଦେଇ ବ୍ରତ ଧାରଣ

କରିବା ଅର୍ଥ ଦଶ ଲକ୍ଷଣାନ୍ୱିତ ଧର୍ମାଚରଣ କରିବା ଲାଗି ପ୍ରତିଜ୍ଞା କରିବା । ସାଧାରଣତଃ ସ୍ତ୍ରୀମାନେ ଧର୍ମପତ୍ନୀ ବା ସହଧର୍ମିଣୀ । ପ୍ରତ୍ୟେକ ଧର୍ମକାର୍ଯ୍ୟରେ ସ୍ତ୍ରୀର ସହାୟତା ଆବଶ୍ୟକ । ସୁତରାଂ ବ୍ରତ ଧାରଣ କରିବା ଅର୍ଥ ଧର୍ମ କାର୍ଯ୍ୟ କରିବାରେ ବ୍ରତୀ ହେବା । ଲକ୍ଷ୍ମୀ ଆଦର୍ଶ ଧର୍ମପତ୍ନୀ; ସୁତରାଂ ଲକ୍ଷ୍ମୀବ୍ରତ ଅର୍ଥ ଧର୍ମବ୍ରତ । ମୋ କ୍ଷୁଦ୍ରମତରେ ସୁଦଶା ବ୍ରତରେ ଏହି କାରଣରୁ ଦଶଟି ଗଣ୍ଠି ଦିଆ ଯାଇଥାଏ । ଦଶଗଣ୍ଠିସମନ୍ୱିତ ବ୍ରତ ଧାରଣ କରିବା ଅର୍ଥ ଦଶଲକ୍ଷଣଯୁକ୍ତ ଧର୍ମ ପ୍ରତିପାଳନ କରିବାକୁ ପ୍ରତିଜ୍ଞା କରିବା ।

ଯେଉଁ ସମାଜର ଅନ୍ତଃପୁରରେ ଏସବୁ ବଳାଯିଭା [illegible] ଯାଏ, ଯେଉଁ ସମାଜର ନାରୀମାନେ ଯେବେ କେବଳ ବାହ୍ୟାଡ଼ମ୍ବରପ୍ରିୟା ହୁଅନ୍ତି, ତେବେ ଏହା କି ଦୁଃଖ ପରିତାପର ବିଷୟ ! ନାରୀମାନଙ୍କର ଏ ବିଷୟ ବିଚାର କରିବା ଆବଶ୍ୟକ ।

କରିବା ଅର୍ଥ ଦଶ ଲକ୍ଷଣାନ୍ୱିତ ଧର୍ମାଚରଣ କରିବା ଲାଗି ପ୍ରତିଜ୍ଞା କରିବା । ସାମାଜିକତଃ ସ୍ତ୍ରୀମାନେ ଧର୍ମପତ୍ନୀ ବା ସହଧର୍ମିଣୀ । ପ୍ରତ୍ୟେକ ଧର୍ମକାର୍ଯ୍ୟରେ ସ୍ତ୍ରୀର ସହାୟତା ଆବଶ୍ୟକ । ସୁତରାଂ ସୂତ୍ର ଧାରଣ କରିବା ଅର୍ଥ ଧର୍ମ କାର୍ଯ୍ୟ କରିବାରେ ବ୍ରତୀ ହେବା । ଲକ୍ଷ୍ମୀ ଆଦର୍ଶ ଧର୍ମପତ୍ନୀ; ସୁତରାଂ ଲକ୍ଷ୍ମୀବ୍ରତ ଅର୍ଥ ଧର୍ମବ୍ରତ । ଏମା ଗୁରୁବାରରେ ପୂଜଣା ହୁଅନ୍ତି ଏହି କାରଣରୁ ଦଶଟି ଗଣ୍ଠି ଦିଆ ଯାଇଥାଏ । ଦଶଗଣ୍ଠିସମନ୍ୱିତ ସୂତ୍ର ଧାରଣ କରିବା ଅର୍ଥ ଦଶଲକ୍ଷଣଯୁକ୍ତ ଧର୍ମ ପ୍ରତିପାଳନ କରିବାକୁ ପ୍ରତିଜ୍ଞା କରିବା ।

ଯେଉଁ ସମାଜର ଅନ୍ତଃପୁରରେ ଏପରି ବାଳବିଧବା ସୃଷ୍ଟି ହୁଏ, ସେହି ସମାଜର ନାରୀମାନେ ଯେବେ କେବଳ ବାହ୍ୟାଡ଼ମ୍ବର-ପ୍ରିୟା ହୁଅନ୍ତି, ତେବେ ଏହା କି ଦେଶ ପରିତାପର ବିଷୟ । ନେତାମାନଙ୍କର ଏ ବିଷୟ ବିଚାର କରିବା ଆବଶ୍ୟକ ।

# ଗୃହଲକ୍ଷ୍ମୀ

## ପ୍ରଥମ ପରିଚ୍ଛେଦ

ସ୍ତ୍ରୀ—ପିଲାଟା କାନ୍ଦି କାନ୍ଦି ଥକିଗଲାଣି । ମତେ ମାରିପିଟି ଅଧାନ୍ତ କଲାଣି । ଏକା ଜିଦ୍ କରି ବସିଛି, ବାଣ କିଣି ଆଣିଦେଲେ ହେବ ! ଦାଣ୍ଡରେ ସବୁ ପିଲାଏ ବାଣ ମାରୁଛନ୍ତି, ତା ମନ ଉଧିକବିକଳ ହେଉଛି ! ଆଜି ତ ଦୀପାବଳୀ ଉଆଁସ, କେତେ ପିଲାଏ କେତେ ପଇସାର ବାଣ କିଣି ପୋଡ଼ି ଦେଉଛନ୍ତି, ତମେ ତାକୁ ଦୁଇଅଣାର କିଣି ଆଣିଦେଲେ କଣ ପଇସା ସରି ଯାଉଛି ? ପିଲାଟା ଏତେ କାନ୍ଦୁଛି, ତମକୁ ବିକଳ ଲାଗୁ ନାହିଁ, ନେଉଛ ତା ଉପରେ ଗାଳି ? ଏତେ ପଇସା ରୋଜଗାର କରି ଅଲଅ ହେବ, ପୋଡ଼ିଯାଉ ତମ ଟଙ୍କା କଉଡ଼ି ।

ସ୍ୱାମୀ—ବୁଝାମଣା ବେଶ୍ ! ବାପ ପୁଅର ଯେବେ ସର୍ବନାଶ ନ କଲା, ତେବେ ତାର ଅପରାଧ !

ସ୍ତ୍ରୀ—କେତେଠି କୁଆଡ଼େ ଖର୍ଚ୍ଚ ବାର୍ଚ୍ଚ ହେଉଛି । ପୁଅକୁ ବାଣ ଦୁଇଅଣାର କିଣିଦେଲେ ସର୍ବନାଶ ହେଲା କିପରି ମ ?

ସ୍ୱାମୀ—ତା ତୁମେ ବୁଝିବ କିପରି ? ପୁଅକୁ ବାଣ ମାରି ନ ଶିଖାଇଲେ ବାପ ହେବାଟା ଅନ୍ୟାୟ !

ସ୍ତ୍ରୀ—ଅନ୍ୟାୟ ନୁହେଁ ? ପିଲା ବୋଲି ଗୋଟିଏ, ତୋର ନଅଟା ନା ଛଅଟା ଅଛନ୍ତି ? ପଇସା ଗୁରୁଅଣା ଲାଗି ସେ ଯେବେ କାନ୍ଦି କାନ୍ଦି ଲୁହ ଗଲା ଏବାଠି କଲା ତେବେ—

ସ୍ୱାମୀ—ତେବେ ଅମ ଜନ୍ମ ବୃଥା ।

ସ୍ତ୍ରୀ—ବୃଥା ନୁହେ କଣ ମ ? ଠିକ୍ କଣ ଅମକୁ ସ୍ୱର୍ଗକୁ ନେବ ?

ସ୍ୱାମୀ—ଅହ୍ମ ମାଆ ! ପୁଅକୁ ବେଶ୍ ଶିକ୍ଷା ଦିଆଯାଉଛି । ମାଆର ପୁଅ ପ୍ରତି କି କର୍ତ୍ତବ୍ୟ, ଉତ୍ତମ ରୂପେ ବୁଝିଛ ଦେଖୁଛି ।

ସ୍ତ୍ରୀ—ନ ବୁଝିଲେ ନାହିଁ । ମୁଁ ଏତେ ବୁଝିପାରେ ନାହିଁ, ତମ ବୁଝାମଣା ତମଠି ଥାଉ । ଗୋଟାଏ ବୋଲି ପୁଅ, ତହିଁ ପାଇଁ ଏତେ ହଟହଟା କୁଆକଟା, ଆଉ ନଅଟା ଛଅଟା ଥିଲେ କଣ କରନ୍ତି । ଜଗନ୍ନାଥ ଜାଣିକରି ବେଶୀ ପିଲାଝିଲା ଦେଇନାହାନ୍ତି ।

ସ୍ୱାମୀ—କଥାଟା ମିଛ ନୁହେ । ପିଲାଝିଲାଙ୍କୁ ମଣିଷ କରିବା ତ ସହଜ କଥା ନୁହେ । ପୁଅଟିକୁ ମଣିଷ କରିବା ଲାଗି କେତେ ଚିନ୍ତା କରିବାକୁ ହୁଏ ଜାଣ ?

ସ୍ତ୍ରୀ—ସେଥିଲାଗି ଗୋଟାଏ ଚିନ୍ତା କଣ ମ ? ଆଉ କାହାର ପିଲାଝିଲା ଅଛନ୍ତି, ନା ତମର ଏକା ଅଛି ?

ସ୍ୱାମୀ—ଅଗୋ, ମାଇପେ ଯେବେ ସେତିକ ବୁଝୁଥାନ୍ତେ, ତେବେ ପିଲାଗୁଡ଼ାକ କଣ ଏତେ ଅବାଟକୁ ଯାଆନ୍ତେ ! ମାଆମାନେ ତ ଆଉ କିଛି ବୁଝନ୍ତି ନାହିଁ, ପୁଅକୁ ଗେଲବସରିଆ କରିଦେଇ ତା ଭବିଷ୍ୟତ ଜୀବନକୁ ମାଟି କରିଦିଅନ୍ତି । ପୁଅ ଭଲ ଖାଇବ, ଭଲ ପିନ୍ଧିବ, ମନଇଚ୍ଛାମାଫିକେ ବୁଲିବ, ପଇସା ଖର୍ଚ୍ଚ କରିବ, ଏତିକି ହେଲେ ମାଆମାନେ ବୁଝନ୍ତି ଯେ ବାପ ପୁଅକୁ ଅଛା ଦେଖି ପାରୁଛି । ଏତିକ ଯେଉଁ ବାପ ନ କଲା, ସେ ବାପ ବାପରେ ଲେଖା ନୁହେ ।

ସ୍ତ୍ରୀ—ନୁହେଁ କଣ ?

ସ୍ୱାମୀ—ଅଚ୍ଛା, ତୁମେ ତାକୁ ମାରିଲ କାହିଁକି ?

ସ୍ତ୍ରୀ—ମାରନ୍ତି ନାହିଁ ? ସେ ମୋ କଥା ମାନିଲା ନାହିଁ, ମୁଁ ତାକୁ ଅକଟ କରନ୍ତି ନାହିଁ ?

ସ୍ୱାମୀ—ଅଚ୍ଛା ବେଶ୍ କଲ, ଅକଟ କଲ, ସେ କଣ କରିଥିଲା ବୋଲି ମାଡ଼ ଖାଇଲା କହିଲ ଦେଖି ?

ସ୍ତ୍ରୀ—କାଲି ଜ୍ୱରୁଜ୍ୱରିଆ ଦେହରେ ଖରାରେ ଗୁଡ଼ାଏ ବଜାର ପିଲାଙ୍କ ସାଥିରେ ଖେଳିଲା । ମନା କଲି, ନ ମାନିବାରୁ ଦି ଚଟକଣି ପକେଇଲି ।

ସ୍ୱାମୀ—ଅଚ୍ଛା ମାଆ !

ସ୍ତ୍ରୀ—କାହିଁକି ମ ? ମୁଁ କଣ ଅନ୍ୟାୟ କଲି ?

ସ୍ୱାମୀ—ନାହିଁ ଷୋଳକଣ୍ଠା ନ୍ୟାୟ ! ପିଲାଟା ତ ଖେଳୁଥିଲା । ତମର କଣ ପଇସା ଖର୍ଚ୍ଚ ପଡ଼ୁଥିଲା ? ପିଲାବେଳେ ତ ସମସ୍ତେ ଧାଁଧପଡ଼ କରନ୍ତି, ତାର ଦୋଷ ହେଲା କଣ ?

ସ୍ତ୍ରୀ—ଆଗୋ, ସେ ତ ବାଳୁତ ପିଲା, ସେ କଣ ଭଲ ମନ୍ଦ ଜାଣୁଛି ? ଖରାରେ ଦଉଡ଼ିଲେ ଯେ ଦେହ ଅସୁଖ ହୁଅନ୍ତା । ସେଠୁ ଡାକ୍ତରଙ୍କୁ ଡାକି ଫିସ୍ ଟଙ୍କା ଦେଇ ଔଷଧ କିଣନ୍ତିକି ? ମୁଁ ମନା କଲି ବୋଲି ମୋର ଦୋଷ ହେଲା କଅଁ ?

ସ୍ୱାମୀ—ପିଲା ଭଲ ମନ୍ଦ ବୁଝି ପାରେ ନାହିଁ ବୋଲି ତେମେ ତାକୁ ମାରିଲଟିକି ! ସେହିପରି ପିଲା ତ କିଛି ଜାଣେ ନାହିଁ, ସେ ଯେବେ କୌଣସି ବିଷୟରେ ଅକଟ ହୁଏ, ତେବେ ସେ ବିଷୟରୁ ତା ମନ ଭାଙ୍ଗି ଦେବାଟା କଣ ଭଲ ନୁହେଁ ?

ସ୍ତ୍ରୀ—ଭଲ ମନ୍ଦରେ ବାପ ପୁଅକୁ ଅକଠ କରିବାକୁ ମୁଁ କଣ ମନା କଲି ?

ସ୍ୱାମୀ—ମୁଁ ତ ସେଥିଲାଗି ପୁଅକୁ ଗାଳି ଦେଲି, ତମେ କଣ ବୁଝିଲ ଯେ ଓଲଟି ମୋ ସାଥିରେ କଳି କରୁଛ ?

ସ୍ତ୍ରୀ—ତେବେ କଣ ପାଇଁ ଗାଳି ଦେଲ ? ଅଣ୍ଟାରୁ ପଇସା ସରିଯିବ ବୋଲି ?

ସ୍ୱାମୀ—ପଇସା ସରିଯିବା କଥାଟା ତମକୁ ଖାଲି ଦିଶୁଛି ! ମୁଁ ଏଇ ଅଟା ପଇସା ପାଇଁ କଣ କଥା ପଡ଼ୁଛି ?

ସ୍ତ୍ରୀ—ତେବେ ଆଉ କଣ ?

ସ୍ୱାମୀ—ବୁଝି ନ ପାରିଲେ ଶୁଣ । ପିଲାମାନେ ଆପଣା ଭଲ ମନ୍ଦ ଆପେ ବୁଝି ପାରନ୍ତି ନାହିଁ । ପିଲାମାନେ କଞ୍ଚା ହାଣ୍ଡି ପରି । ଯେପରି କଞ୍ଚା ହାଣ୍ଡି ଉପରେ ଗାରଟିଏ ପକାଇଦେଲେ ସେ ଗାର ହାଣ୍ଡି ଭାଙ୍ଗି ନ ଯିବାଯାଏ ଲିଭିବ ନାହିଁ, ସେହିପରି ପିଲାମାନଙ୍କୁ ଏଇ ଦିନୁ ଯେପରି ଗଢ଼ିନେବ ସେମାନେ ସେହିପରି ମଣିଷ ହେବେ । ପିଲାମାନେ ମା କଥାକୁ ବେଶୀ ଶୁଣନ୍ତି ଏବଂ ମା କହିବା ଅନୁସାରେ କାର୍ଯ୍ୟ କରନ୍ତି । ଏହି ହେତୁରୁ ପୁଅ ଝିଅଙ୍କୁ ମଣିଷ କରିବାଲାଗି ମା ଦାୟୀ । ମା ଦୋଷରୁ ଅନେକ ସ୍ଥଳରେ ପିଲାଗୁଡ଼ିକ ଅବାଗିଆ ଅବର୍ଗିଆ ହୋଇଯାନ୍ତି । ପିଲାଦିନୁ ଯେପରି ଛାଞ୍ଚରେ ଢାଳିବ, ପିଲାଟି ସେହି ଅନୁସାରେ ଢାଳି ହୋଇଯିବ । ଦେଖିଛଟିକି ମାଆମାନେ ପିଲାଙ୍କୁ ଯେଉଁ ଅନ୍ଧାର ଗୁଡ଼ଗୁଡ଼ି କଥା କହିଥାନ୍ତି, ସେ କଥାଟା ମରିବାଯାଏ ପାସୋର ଯାଏ ନାହିଁ, ଅନ୍ଧାର ସ୍ଥାନ ଦେଖିଲେ ମାଠାରୁ ଶୁଣିଥିବା କଥା ମନେ ପଡ଼ିଯାଏ । ପିଲାଦିନୁ ଏହିପରି ନାନାପ୍ରକାର ଭୟ କଥା ଶୁଣାଇଲେ ପିଲାମାନଙ୍କ ସାହସ ଭାଙ୍ଗି

ହୋଇଯାଏ, ପିଲମାନେ ଭଯ୍ଯାଳୁ ହୋଇଯାନ୍ତି । ସୁତରାଂ ପିଲମାନଙ୍କୁ ପିଲଦିନରୁ ବୀରପୁରୁଷମାନଙ୍କ କଥା, ବୀରାଙ୍ଗନା-ମାନଙ୍କ କଥା, ରାମାୟଣ-ମହାଭାରତ କଥା, ସାବିତ୍ରୀ କଥା ଇତ୍ୟାଦି ଭଲ କଥା ଶୁଣାଇଲେ ପିଲମାନଙ୍କ ମନ ସେ ଆଡ଼କୁ ଧାଇଁବ । ପାଠ ପଢ଼ିଲେ କଣ ହେବ, ପାଠ ନ ପଢ଼ିଲେ କଣ ହେବ, ଏସବୁ ପିଲମାନଙ୍କୁ ସଦାସର୍ବଦା ଶୁଣାଇଲେ ସେମାନଙ୍କ ମନ ବିଦ୍ୟା-ପଠନ ଆଡ଼କୁ ଯିବ । ସତ କଥା କହିବାକୁ ଶିକ୍ଷା ଦେବ, କିନ୍ତୁ ଆମ ଦେଶର ମାତାମାନେ ପିଲାଙ୍କୁ ଭୁଲାଇ ଦେବାଲାଗି କେତେଗୁଡ଼ାଏ ମିଛକଥା କହିଥାନ୍ତି, ଏହିଟି ଅତି ଅନ୍ୟାୟ କଥା । ପିଲମାନଙ୍କୁ ସତକଥା କହିବାକୁ ଶିକ୍ଷା ଦେଲେ ମାତା ସର୍ବଦା ସତ୍ୟକଥା ପିଲ ଆଗରେ କହିବ, ଭୁଲ୍ ଭଟକାରେ ବି ପଦେ ମିଥ୍ୟା କହିବ ନାହିଁ । ଯେଉଁ ଦିନ ପିଲ ଜାଣିପାରିବ ଯେ, ମା ଅମୁକ ଦିନ ମିଛ କଥା କହି ମୋତେ ଭୁଲାଇଥିଲା, ସେ ଦିନଠାରୁ ସେ ଶହେ ମିଛ କଥା କହି ମା ଆଗରେ ଆପଣା ଦୋଷ ଘୋଡ଼ାଇବାକୁ ଚେଷ୍ଟା କରିବ । ମା ହଜାରେ ଶିଖାଇଲେ ବା ମାରଧର କଲେ ଆଉ ମା କଥା ପ୍ରତି ପିଲର ଭକ୍ତି ରହିବ ନାହିଁ । ଦିଅଁ ଦେବତାଙ୍କୁ ମାନ୍ୟ ଓ ଭକ୍ତି କରିବା, ପିତା ମାତାଙ୍କୁ ମାନ୍ୟ ଓ ଭକ୍ତି କରିବା, ଗୁରୁଜନମାନଙ୍କଠାରେ ଭକ୍ତି କରିବା, ଉପଯୋଗୀ ଶିକ୍ଷାଗୁଡ଼ିକ ମା ଅତି ପିଲଦିନୁ ବାଳକ ବାଳିକାମାନଙ୍କୁ ଶିକ୍ଷା ଦେବ । କିନ୍ତୁ ପିଲ ଯେଉଁ ଦିନ ଦେଖିବ ଯେ ମା ଶାଶୁ ସହିତ କଳି କରୁଛି, ଶାଶୁକୁ ତୁକାର କଥା କହୁଛି, ଶାଶୁକୁ ଝିଙ୍ଗୁଣୀ ପ୍ରହାର କରୁଛି ଅଥବା ଅନ୍ୟାନ୍ୟ ଗୁରୁଜନଙ୍କ ପ୍ରତି ମନ୍ଦ ବ୍ୟବହାର କରୁଛି, ସେହି ଦିନୁଁ ପିଲ ଆପଣା ମା, ବାପ, ଭାଇ,

ଭଉଣୀଙ୍କ ପ୍ରତି ସେହିପରି ବ୍ୟବହାର କରିବ । ସୁତରାଂ ପିଲାକୁ ଯେପରି ଭଲ ମଣିଷ କରିବାକୁ ମା ଚେଷ୍ଟା କରିବ, ମା ସେହିପରି ଭଲ ଆଚରଣରେ ଚଳିବ । ପିଲା ମା'କୁ ଯେପରି ଦେଖିବ, ସେହିପରି ଅନୁକରଣ କରିବ । ପିଲା ପେଟରେ ଥିଲାବେଳେ ଓ ଜନ୍ମ ହେଲେ ଦୁଇ ତିନି ବର୍ଷ ଯାଏ ମା'କୁ ଯେପରି ପିଇଖାଣି ଖାଇ ଚଳିବାକୁ ହୁଏ, ସେହିପରି ପିଲାଟି ମଣିଷ ହେବାଯାଏ ମା ବାପଙ୍କୁ ଶିକ୍ଷାଧାରରେ ବାଟ ଚାଲିବାକୁ ପଡ଼ିବ । ପିତା ମାତା ପିଲାମାନଙ୍କର ପ୍ରଧାନ ଗୁରୁ । ସେମାନେ ଯେପରି ଆଚରଣ ଦେଖାଇବେ, ପିଲାମାନେ ସେହି ଆଚରଣ କରିବେ । ପିଲାମାନେ ପିତା ଅପେକ୍ଷା ମାତାଙ୍କୁ ବେଶୀ ଅନୁକରଣ କରନ୍ତି । ସୁତରାଂ ମାତାର ଦାୟିତ୍ୱ ବେଶୀ । ପିଲାମାନେ ବିଳାସ ବାସନାକୁ ଯେପରି ମନରେ ସ୍ଥାନ ନ ଦିଅନ୍ତି, ତହିଁ ପ୍ରତି ମା'ର ବିଶେଷ ଦୃଷ୍ଟି ଦେବା ଉଚିତ । ପିଲା କୌଣସି ମନ୍ଦ କାର୍ଯ୍ୟକୁ ଇଚ୍ଛା କଲେ ମାତା ସର୍ବଦା ପିଲାମନ ସେ ଦିଗରୁ ଫେରାଇବାକୁ ଚେଷ୍ଟା କରିବ । ପିଲା ଯେବେ ଜାଣିବ ଯେ, ସେ କାନ୍ଦିଲେ ତା ମନମାଫିକେ କାର୍ଯ୍ୟ କରି ପାରିବ, ତେବେ ତା ବାଞ୍ଛିତ ପଦାର୍ଥ ପାଇବା ଲାଗି କାନ୍ଦି କାନ୍ଦି ମା ବାପଙ୍କୁ ଜବରଦ୍ କରିବ । ପିଲାମାନଙ୍କ ମୁହଁ ବଢ଼ାଇଦେବା ଉଚିତ ନୁହେ । ପିଲାର ଜିଦ୍ ଭାଙ୍ଗି ସେ ଯେପରି ପିତାମାତାଙ୍କ ଆଜ୍ଞାନୁସାରେ କାମ କରିବ, ସେଥିଲାଗି ସର୍ବଦା ଦୃଷ୍ଟି ରଖିଥିବ । ପିଲା କାନ୍ଦିଲା ବୋଲି ତରଳି ଯିବ ନାହିଁ । ପିଲାକୁ ଶାସନ କରିବା ଗୋଟିଏ ବଡ଼ କଠିନ ବିଦ୍ୟା । ପେଟରେ ସ୍ନେହ ଥିବ, ମାତ୍ର ମୁହଁରେ ଟିକିଏ କଡ଼ା ଭାବ ରହିବା ଆବଶ୍ୟକ । କଥା ଅଛି, "ଯାହା ନାହିଁ

ବାଳକାଳେ, ତାହା ନାହିଁ କାଳେ କାଳେ ।" ଆଉ ଗୋଟିଏ କଥା ଅଛି, "ସାନଧନ କାନ ଚଢ଼ିଲେ ବଡ଼ଧନକୁ ଲଢ଼ଇ ।" ଏ ଦୁଇଟି କଥାରେ ଅନେକ ସତ୍ୟ ଅଛି । ମୁଁ ଉପରେ ଯେତେ କଥା କହୁଛି, ଏ ଦୁଇଟି କଥା ମନେ ରଖି ପାରିଲେ ସମସ୍ତ ବୁଝି ପାରିବ । ପୁଅଟି ଭଲ ହେଲେ ଯେପରି ସୁଖ, ପୁଅଟି ମନ୍ଦ ହେଲେ ଦୁଃଖ ତତୋଽଧିକ । ଝିଅଟି କିପରି ସୁମାତା, ସୁଗୃହିଣୀ ହେବ, ପାଞ୍ଚଲୋକରେ ପ୍ରଶଂସା ପାଇବ, ସେଥିଲାଗି ମାତାର ସର୍ବଦା ଚିନ୍ତା କରିବା ଆବଶ୍ୟକ ।

ସ୍ତ୍ରୀ—ମୋ ମାଲୋ, କଣ ପଦେ ପଦେ କହୁ କହୁ ସାତ ଖଣ୍ଡ ରାମାୟଣ ପୋଥି ପିଟିଲ । ପିଲାଟାକୁ ଗେଲବସର କଣ କଲି ମ ?

ସ୍ୱାମୀ—ଗେଲବସର କିପରି କରୁଛ ଯେତିକି ବୁଝିପାରୁଥିଲେ, ଏତେ କଥା ପଡ଼ନ୍ତା କାହିଁକି ? ସେ ଦିନ ପରା କହୁଥିଲ, ତମଠାରୁ ଦିନକେ ଦିପଇସା ଲେଖାଏଁ ନେଇ ଦୋକାନରୁ ମିଠେଇ କିଣି ଖାଉଛି ?

ସ୍ତ୍ରୀ—ପିଲାଏ କଣ ମିଠେଇ ମଧୁରା ଖାଆନ୍ତି ନାହିଁ ? ଖାଇବାଟା କଣ ଦୋଷ ?

ସ୍ୱାମୀ—ଆହେ ସେଥିଲାଗି ତ କହୁଛି ମାଇପେ କିଛି ବୁଝନ୍ତି ନାହିଁ; ପିଲା କାନ୍ଦିଲେ ସୁନାଲିହା ତଳେ ପଡ଼ିଲା ପରି ତରଳିଯାଅ । ମିଠେଇଗୁଡ଼ିକ କିଣା ଖାଇଦେବାକୁ ସ୍ୱାଦୁ ଲାଗୁଛି, ତେଣେ ଯେ କୁପିରୋଗ ହୋଇ ସ୍ୱାସ୍ଥ୍ୟ ନଷ୍ଟ ହେଉଛି, ସେ କଥା କଣ କେହି ବୁଝୁଛି ? ମା'ମାନେ ଯେବେ ଟିକିଏ ଟିକିଏ ଔଷଧ ମୌଷଧି କଥା ଜାଣୁଥାନ୍ତେ, ତେବେ ବହୁତ ଉପକାର ହେଉଥାନ୍ତା । ଆଗେ ବୁଢ଼ୀମାନେ କେତେ ଔଷଧ ଜାଣୁଥିଲେ, ପାଞ୍ଚଲୋକଙ୍କଠାରୁ ବୁଝି ଶିଖୁଥିଲେ; ଏବେ ବୋହୂମାନଙ୍କର

ଆଜି ସେଥିଅଡ଼କୁ ମନ ନାହିଁ । ଏବକାଳ ବୋହୂଝିଅଣୀମାନେ ଖଟରେ ବସି ଉପନ୍ୟାସ ପଢ଼ିବାକୁ ଭଲ ପାଉଛନ୍ତି; ମାତ୍ର ପିଲାମାନଙ୍କୁ କିପରି ମଣିଷ କରିବାକୁ ହେବ, ପିଲାଟି କିପରି ପାଠ ପଢ଼ି ଯୋଗ୍ୟ ହୋଇ ପାଞ୍ଚଲୋକରେ ଗଣିତା ହେବ, ପିଲାମାନଙ୍କର ରୋଗ ହେଲେ କିପରି ଚିକିତ୍ସା କରିବାକୁ ହେବ, ସେ ସବୁ ଆଡ଼କୁ ତ କେହି ମନ ଦେଉ ନାହାନ୍ତି ! ଆଗେ ବୁଢ଼ୀମାନେ ଚେର ମୂଳମୂଳିକା ଔଷଧ ଏପରି ଜାଣିଥିଲେ ଯେ, ପିଲାମାନଙ୍କର ସାମାନ୍ୟ ଜ୍ୱର, କାଶ, ସର୍ଦ୍ଦି, ପିହୁଳା, କ୍ରିମି, ହଗା ପ୍ରଭୃତି ରୋଗ ହେଲେ ଦାଣ୍ଡରେ କେହି ଜାଣୁ ନ ଥିଲେ । ଏବେ ପିଲାଙ୍କର ଟିକିଏ ସାମାନ୍ୟ ରୋଗ ହେଲା ତ ଗୋଟାଏ ଡାକ୍ତର ନ ଆସିଲେ ନ ଚଳେ । ଏବେ ଘରୁ ସେ କାଳର ଟୁଟକାଟୁଟିକି ଔଷଧ ଲୁଚିଲାଣି । ଯେଉଁ ରୋଗ ବିନା ଖର୍ଚ୍ଚରେ ଚେରମୂଳରେ ଭଲ ହେଉଥିଲା ଏବେ ସେହି ରୋଗ ଲାଗି ଶହ ଶହ ଟଙ୍କା ଖର୍ଚ୍ଚ । ସୁତରାଂ ଉପନ୍ୟାସ ପଢ଼ିବାଠାରୁ ବୈଦ୍ୟଶାସ୍ତ୍ର ଟିକିଏ ପଢ଼ିଲେ ଭଲ ହୁଅନ୍ତା ନାହିଁ କି ?

ସ୍ତ୍ରୀ—ମଲା, ମୁଁ କହିଲି କେଉଁ କଥା, ସେଥିରୁ ବାହାରିଲା ଏତେ ଏତେ କଥା । ବଡ଼ ମଣିଷଙ୍କର କଣ ଏପରି ଇଚ୍ଛା ହୁଏ ନାହିଁ ? ବଡ଼ ମଣିଷମାନେ କଣ ଉଡ଼ାବସ୍ତ୍ରିଆ ପଥରେ କେତେ ପଇସା କେତେଠି ଖର୍ଚ୍ଚ କରନ୍ତି ନାହିଁ ?

ସ୍ୱାମୀ—ଯେଉଁମାନେ କରନ୍ତି, ସେଇଟା କଣ ତାଙ୍କର ପ୍ରଶଂସାର କଥା ? ମନ୍ଦ କାର୍ଯ୍ୟରେ ବଡ଼ ମଣିଷ ସାନ ପିଲାରେ ପ୍ରଭେଦ କଣ ଅଛି ? ମନ୍ଦ କାର୍ଯ୍ୟ ବଡ଼ ମଣିଷ କଲେ ଯେପରି ଦୋଷ, ପିଲା କଲେ ବି ସେହିପରି ଦୋଷ । ତେବେ ବଡ଼ ମଣିଷଙ୍କର

ଭଲମନ୍ଦ ବିଚାର କରିବାର ଶକ୍ତି ଅଛି । କୌଣସି ମନ୍ଦ ଇଚ୍ଛା ମନରେ ଜାତ ହେଲେ ସେମାନେ ଆପଣା ମନକୁ ବୁଝାଇ ନିବର୍ତ୍ତି ପାରନ୍ତି । ଯେଉଁମାନେ ନିବର୍ତ୍ତି ନ ପାରନ୍ତି ସେମାନେ ଖଇର ଖପର ହୁଅନ୍ତି । ମାତ୍ର ପିଲାଙ୍କର ତ ଭଲ ମନ୍ଦ ବାଛିବାର ଶକ୍ତି ନାହିଁ, ସେମାନଙ୍କ ମନରେ ମନ୍ଦ ଇଚ୍ଛା ଯେପରି ଘର ନ କରେ ସେଥିଲାଗି ପିତା ମାତାମାନେ ସତର୍କ ଥିବେ । ପିଲାର ଜିଦ୍ ଭାଙ୍ଗିବା କଥା ମୁଁ କହିଲି ସିନା, ପଇସା ଚାର ଅଣା ଖର୍ଚ୍ଚ ହୋଇଯିବ ବୋଲି କଣ ଏତେ କଥା କହିଲି ?

ସ୍ତ୍ରୀ—ମୁଁ ସେଇ କଥା ବୁଝିଲି ।

ସ୍ୱାମୀ—ଏକା ତମେ କିଅଁ, ଏ ଓଡ଼ିଶାଯାକର ମାଇପଙ୍କର ସେହି ବୁଝାମଣା । ଏବେ ଯାହା କହିଲି ସେଗୁଡ଼ିକ କଣ କିଛି ବୁଝିଲ, ନା ଏ କାନେ ପଶି ସେ କାନେ ବାହାରିଗଲା !

ସ୍ତ୍ରୀ—ହଁ ବୁଝିଲି, ଏପରି ଯେବେ ଆମ୍ଭମାନଙ୍କୁ କିଏ ବୁଝାଇ ଦେଉଥାନ୍ତା, ଆମ୍ଭେମାନେ କଣ ବୁଝନ୍ତୁ ନାହିଁ ?

ସ୍ୱାମୀ—ଆପଣାର ମନ ଥିଲେ ପଚାରି ବୁଝନ୍ତି । ଆଚ୍ଛା, ଏଣିକି ତମକୁ କିଛି କିଛି ବୁଝାଇ ଦେବା । ଆଜି ଏତିକି ! ମୁଁ ଯାଉଛି, କାମ ଅଛି ।

---

## ଦ୍ୱିତୀୟ ପରିଚ୍ଛେଦ

ସ୍ତ୍ରୀ—ଆଜି ମତେ ଦଶ ଟଙ୍କା ଦିଅ ।

ସ୍ୱାମୀ—କାହିଁକି ?

ସ୍ତ୍ରୀ—ମୁଁ ଅଳଙ୍କାର କିଣିବି ।

ସ୍ୱାମୀ—କାହିଁକି, ତମର କଣ ଅଳଙ୍କାର ନାହିଁ କି ?

ସ୍ତ୍ରୀ—ମୋର କି ଅଳଙ୍କାର ଅଛି ମ ? ଲୋକେ ବେଢ଼ାଏ ଲେଖାଏଁ ଅଳଙ୍କାର ଲଦି ହୋଇଛନ୍ତି, ପୁଣି ଘରେ ପଅଁ ଥାକେ ତିନି ଥାକେ ସାଇତି ରଖିଛନ୍ତି, ଆମର କାହିଁ କି ଅଳଙ୍କାର ଅଛି ?

ସ୍ୱାମୀ—ସେମାନଙ୍କର ଅଛି ଅଛି, ଆମେ କଣ ତାଙ୍କ ଦେଖା ଦେଖି ଗୁଣ୍ଡାଏ ସାଇତି ନ ରଖିଲେ ଚଳିବ ନାହିଁ ? ଆମ ଆୟକୁ ଚାହିଁ ସିନା ଆମେ ଚଳିବା, କାହା କଥାରୁ ଆମକୁ କି ମିଳିବ ?

ସ୍ତ୍ରୀ—ତମେ କଣ ଆୟ କରୁ ନାହିଁ ? ତମଠୁ କଣ କିଏ ବେଶୀ ଆୟ କରୁଛି ?

ସ୍ୱାମୀ—ଆମର କି ଆୟ ହେ ! ଲୋକେ ଅଛନ୍ତି କିଏ ମାସକୁ ପାଞ୍ଚ ହଜାର ପଚିଶ ହଜାର କମାଉଛନ୍ତି, କାହାର ଆୟ ବର୍ଷକୁ ପାଞ୍ଚ ଲକ୍ଷ ତିନି ଲକ୍ଷ; ସେମାନଙ୍କ ତୁଳନାରେ ଆମ ଆୟ କିଛି ନୁହେ । ଏତେ ଟଙ୍କାର ଅଳଙ୍କାର କିଣିଲେ ଚଳିବ କିପରି ?

ସ୍ତ୍ରୀ—ମୁଁ ତମ ମନ ବୁଝୁଛି ସିନା ! ତମେ ଯେଉଁ ଦାଅରାହା ତା ମୁଁ ଜାଣେ । ଦାଣ୍ଡଆଡ଼େ ବାବୁ ଖର୍ଚ୍ଚ କରୁଥିବ, ମୁଁ ଅଳଙ୍କାର କିଣିଲବେଳକୁ ନାହିଁ ! ତୁମକୁ ଏ ନିଅଁ ଲଗା ମନ ପରର ଦେଖି ଜହକ ବାକାଳ ହୁଏ । ଅଳଙ୍କାର କିଣିଲେ ତମ ପଦାର୍ଥ ତମ ଘରେ ରହିବ ସିନା, ମୁଁ କଣ ବାପଘରକୁ ନେଇ ପଳାଇବି ?

ସ୍ୱାମୀ—ଏ ତ ଅଛି ଅବୁଝାମଣା କଥା ! ଏବେ ତ ଆମର ପଇସା ନାହିଁ, ଥିଲେ ବି ଯେତେ ଅବଶ୍ୟକ ତାଠାରୁ ବେଶୀ ଟଙ୍କାର ଅଳଙ୍କାର କିଣି ଘରେ ଥୋଇଲେ ଲାଭ ନାହିଁ; ସେହି ଟଙ୍କା ଅନ୍ୟ ବ୍ୟବସାୟରେ ଲଗାଇଲେ ବରଂ ଲାଭ ମିଳିବ । ମାଇପଙ୍କୁ ତ ଅଳ କିଛି ବୁଦ୍ଧି ଦିଶେ ନାହିଁ, ଅଳଙ୍କାର କିଣା ବୁଦ୍ଧିଟା ବେଶୀ ଦିଶେ ।

ସ୍ତ୍ରୀ—ମାଇପଙ୍କର ଆଉ କଣ ଅଛି ? ମୁଠାଏ ଖାଇବେ, ଖଣ୍ଡେ ପିନ୍ଧିବେ, ପାଞ୍ଚ ଜିନ ଭଲ ଜିନ ଅଲଙ୍କାର ଲଗାଇବେ । ମାଇପେ ଆଉ କଣ କରିବେ ?

ସ୍ୱାମୀ—ଅଲଙ୍କାର ନାଇ ବସିବା ଛଡ଼ା ମାଇପେ କଣ ଆଉ କିଛି କାମ କଲେ ପାପ ହେବ ? ଈଶ୍ୱର ଯେଉଁ ଭୂଷଣଗୁଡ଼ିକ ଦେଇଛନ୍ତି, ସେଗୁଡ଼ିକ ପରିଷ୍କାର ପରିଚ୍ଛନ୍ନ କରି ଧାରଣ କରି-ଥିଲେ.ଆଉ ଅନ୍ୟ ସୁନା ରୁପା ଅଲଙ୍କାର ଆଡ଼କୁ ମନ ଯିବ କାହିଁକି ?

ସ୍ତ୍ରୀ—ଈଶ୍ୱର ଆଉ ଭୂଷଣ କଣ ଦେଇଛନ୍ତି ମ ? ଜନ୍ମ ହେଲାବେଳେ କଣ ମଣିଷ ଅଲଙ୍କାର ପିନ୍ଧି ଜନ୍ମ ହୁଏ ?

ସ୍ୱାମୀ—ଅହେ, ମୁ ସୁନା ରୁପା ଅଲଙ୍କାର କଥା କହୁ ନାହିଁ । ଏ ଗୁଡ଼ାକ ତ ସଦାକାଳେ ରହିବ ନାହିଁ । ଚୋର ନେଇଗଲେ ଗଲା, ସମ୍ପତ୍ତି ସରିଗଲେ ଗଲା, ବିଧବା ହେଲେ ଗଲା; ଏ ସବୁ ସୁନା ରୁପା ଅଲଙ୍କାର ତ କ୍ଷଣସ୍ଥାୟୀ । ମାତ୍ର ଯେଉଁ ଅଲଙ୍କାର କି ସଧବା, କି ବିଧବା, କି ସୁଖୀ, କି ଦୁଃଖୀ, ସମସ୍ତଙ୍କୁ ସବୁ-ବେଳେ ମିଳି ପାରିବ, ସେହି ଅଲଙ୍କାରଗୁଡ଼ିକ ଈଶ୍ୱର-ପ୍ରଦତ୍ତ । ସେଗୁଡ଼ିକ ଈଶ୍ୱର ପ୍ରତ୍ୟେକ ଲୋକର ହୃଦୟ ଭିତରେ ରଖି ଦେଇଛନ୍ତି, ସେଗୁଡ଼ିକ ବାହାର କରି ସେହି ଭୂଷଣରେ ଭୂଷିତ ହେଲେ ଏ ମର୍ତ୍ତ୍ୟଲୋକ ସ୍ୱର୍ଗରେ ପରିଣତ ହେବ ।

ସ୍ତ୍ରୀ—ଏପରି କି ଅଲଙ୍କାର ଆମ ଭିତରେ ଅଛି ମ ? ଆମେ ତ କେବେ କାହିଁ ଦେଖି ନାହୁଁ !

ସ୍ୱାମୀ—ତା ତମକୁ ଦିଶିବ କିପରି ? ଯାହା ମନ ସୁନା ରୁପା ଅଲଙ୍କାର ଉପରେ, ତାକୁ ସେ ଅମୂଲ୍ୟ ଭୂଷଣ ଦେଖାଯିବ କିପରି ?

ସ୍ତ୍ରୀ—ଆଜ୍ଞା ଦେଖୁଛୁ ପୁଣି ଗୋଟାଏ କଣ ମହାଭାରତ ଆରମ୍ଭ ହେବ।
ମୁଁ ନାଆଁ ଲଗା ଯେଥିଲାଗି ତମକୁ କିଛି କଥା କହେ ନାହିଁ ।
ଝଙ୍କା ନ ଦବ ତ ନାହିଁ, ମୁଁ ଏତେ ପାଠ ଶୁଣିପାରେ ନାହିଁ ।

ସ୍ୱାମୀ—ଶାସ୍ତ୍ର ଶୁଣିବାଟା କଣ ପାପ ? ଭଲକଥା ଶୁଣିବାକୁ ଏତେ ବିରକ୍ତ କାହିଁକି ?

ସ୍ତ୍ରୀ—କାହିଁକି ? ମୁଁ ଅଳଙ୍କାର କଣା କଥା କହିଲି—ପାଠ ବାହାରିଲା ମୋ ଭିତରେ ଅଳଙ୍କାର ଅଛି । ସଂସାରରେ ଏତେ ଲୋକ ଅଛନ୍ତି, ସମସ୍ତେ କଣ ଅନ୍ଧ ? ସେମାନଙ୍କ ମାଇପଙ୍କ ଭିତରେ ଅଳଙ୍କାର ଥିବାର କାହାକୁ ଦିଶିଲା ନାହିଁ, ତମକୁ ଦିଶିଲା କିପରି ମ ?

ସ୍ୱାମୀ—ଶୁଣ, ମୋ କଥାଟାକୁ ହସି ଉଡ଼ାଇ ଦେଲେ ଚଳିବ ନାହିଁ; କଥାଟା ଶୁଣି ବୁଝିଲେ ସିନା ହେବ ?

ସ୍ତ୍ରୀ—ଆଚ୍ଛା, ତେବେ କହ ସ୍ତ୍ରୀମାନଙ୍କର ଆଉ କି ଅଳଙ୍କାର ଅଛି—ମତେ କିଛି ଜଣା ପଡ଼ୁ ନାହିଁ ।

ସ୍ୱାମୀ—ଦେଖ ! ଗୁଣ ସ୍ତ୍ରୀଲୋକର ଭୂଷଣ । ହାତର ଭୂଷଣ ଦାନ । ଯେଉଁ ସ୍ତ୍ରୀଲୋକ ଦରିଦ୍ରର ଦୁଃଖ ଦେଖି ଆପଣା ବଳକୁ ଚାହିଁ ଚାଉଳ ମୁଠିଏ ହେଲେ ଦାନ କରେ, ଶୋଷୀକି ପାଣି ମଦଏ ଦାନ କରେ, ସେହି କାର୍ଯ୍ୟମାନହିଁ ତା ହସ୍ତର ପ୍ରଧାନ ଭୂଷଣ । ଦାନହିଁ ହସ୍ତର ପ୍ରଧାନ ଅଳଙ୍କାର । ଯାହା ହାତରେ ଏ ଅଳଙ୍କାର ନାହିଁ, ସେ ହସ୍ତ ସୁନାବାହିରେ ଭୂଷିତ ହେଲେ ବି ଅସୁନ୍ଦର । କର୍ଣ୍ଣର ଭୂଷଣ କୃଷ୍ଣନାମ ଶ୍ରବଣ । କଣ୍ଠର ଭୂଷଣ କୃଷ୍ଣନାମ ଜପ । ପାଦର ଭୂଷଣ ତୀର୍ଥଭ୍ରମଣ । ହୃଦୟର ଭୂଷଣ ଦୟା, ପରୋପକାର, ସରଳତା, ବିନୟ ଇତ୍ୟାଦି । ଜିହ୍ୱାର ଭୂଷଣ ସତ୍ୟକଥା ଓ କୃଷ୍ଣନାମ ଉଚ୍ଚାରଣ । ସ୍ତ୍ରୀମାନଙ୍କର

ପ୍ରଧାନ ଭୂଷଣ ଲଜ୍ଜା, ନମ୍ରତା; ପତିପରାୟଣତା । ଏ ସମସ୍ତ ଅଳଙ୍କାର ଈଶ୍ଵର-ପ୍ରଦତ୍ତ । ଏଗୁଡ଼ିକ ସର୍ବଦା ମାଜିମୁଜି ଯେ କାରବାର କରେ, ସେ ଏକା ସୁନ୍ଦରୀ । ଯାହାର ଏ ଅଳଙ୍କାର ନାହିଁ, ସେ ବେତାଏ ଛଡ଼ି ଦଶ ବୋଝ ସୁନା ରୂପା ଗହଣା ଲଦି ହେଲେ କଣ ସୁନ୍ଦର ଦିଶେ ? ଆଚ୍ଛା, ତମେ ତ ପୁରାଣରୁ ଅନେକ ସ୍ତ୍ରୀ ମାନଙ୍କ କଥା ଶୁଣିଥିବ ?

ସ୍ତ୍ରୀ—ଶୁଣିଛି ।

ସ୍ଵାମୀ—କାହା କଥା ଶୁଣିଛ କହିଲ ?

ସ୍ତ୍ରୀ—ସୀତା, ସାବିତ୍ରୀ, ଦମୟନ୍ତୀ, ଦୁର୍ଗାବତୀ, ଲୀଳାବତୀ, ଉଭୟ-ଭାରତୀ, ଖନା, ଲକ୍ଷ୍ମୀ, ଦୁର୍ଗା ଏପରି କେତେ ସ୍ତ୍ରୀଙ୍କ କଥା ଶୁଣିଛି ।

ସ୍ଵାମୀ—ଅଚ୍ଛା କହିଲ, କାହାର କେତେ ଟଙ୍କାର କେତେ ପ୍ରକାର ଅଳଙ୍କାର ଥିଲା କହିଲ ?

ସ୍ତ୍ରୀ—ସେ କଥା ତ କେଉଁଠି ଲେଖା ନାହିଁ ।

ସ୍ଵାମୀ—ତେବେ ଏମାନେ ଅଦ୍ୟାଏ ପୂଜା ପାଉଛନ୍ତି କାହିଁକି ? ଏମାନଙ୍କୁ ତ ତମେମାନେ ଦେବତା ବୋଲି ପୂଜା କରୁଛ, ସାବିତ୍ରୀବ୍ରତ କରୁଛ, ଲକ୍ଷ୍ମୀବ୍ରତ କରୁଛ ଇତ୍ୟାଦି । କାହିଁକି ? କହିଲ ଦେଖି ସୀତାଙ୍କ ନାମ କାହିଁକି ବିଖ୍ୟାତ ?

ସ୍ତ୍ରୀ—ସୀତା ସତୀ ଥିଲେ ।

ସ୍ଵାମୀ—ଆଉ ସ୍ତ୍ରୀମାନଙ୍କ କଥା କଣ ଶୁଣିଛ କହିଲ ?

ସ୍ଵାମୀ—ଦମୟନ୍ତୀ ସତୀ ଥିଲେ, ସାବିତ୍ରୀ ସତୀ ଥିଲେ, ଦୁର୍ଗାବତୀ ବୀରାଙ୍ଗନା ଥିଲେ, ଲୀଳାବତୀଙ୍କର ଅଙ୍କ ପାଠରେ ଅସାଧାରଣ ଜ୍ଞାନ ଥିଲା, ଉଭୟଭାରତୀ ମଣ୍ଡନ ମିଶ୍ରଙ୍କ ସ୍ତ୍ରୀ, ସେ ସବୁ ଶାସ୍ତ୍ରରେ ପଣ୍ଡିତା ଥିଲେ । ଗତ ଥର ଶିକ୍ଷାଦର୍ପଣରେ ଯେଉଁ ଶଙ୍କରାଚାର୍ଯ୍ୟଙ୍କର ଛବି ଥିଲା, ସେ ତାଙ୍କ ସଙ୍ଗେ ତର୍କକରି ବାଦୀ

ବଳରେ ତାଙ୍କୁ ହରାଇ' ଦେଇଥିଲେ, ଖନା ଜ୍ୟୋତିଷ ବିଦ୍ୟାରେ ପଣ୍ଡିତା ଥିଲେ, ଲକ୍ଷ୍ମୀ ବଡ଼ ଦୟାଶୀଳା ରମଣୀ, ଦୁର୍ଗା ମହିଷାସୁରକୁ ବଧ କରିଥିଲେ ।

ସ୍ୱାମୀ—ଆଚ୍ଛା, ଶାସ୍ତ୍ରରେ ତ ଏମାନଙ୍କ ଗୁଣ କଥା ଅଛି କହିଲ; ଆଚ୍ଛା, କିଏ କେତେ ବିଶା ଅଳଙ୍କାର ଲଗାଇଥିବା କଥା କେଉଁଠି ଅଛି ?

ସ୍ତ୍ରୀ—ନା ।

ସ୍ୱାମୀ—ତେବେ ଏଥିରୁ କଣ ଜଣାଯାଉ ନାହିଁ ଯେ ଗୁଣକୁ ସମସ୍ତେ ପୂଜା କରନ୍ତି ? ଅଳଙ୍କାର ଇତ୍ୟାଦିର ପୂଜା ନାହିଁ ? ଯେଉଁ ସ୍ତ୍ରୀମାନଙ୍କ କଥା କହିଲ ସେମାନେ ବଡ଼ ବଡ଼ ଲୋକଙ୍କ ଝିଅ ବୋହୂ ଥିଲେ, ନା ଦୁଃଖୀ ଲୋକର ଝିଅ ବୋହୂ ଥିଲେ ? ସେମାନେ କଣ ଅଳଙ୍କାର ପିନ୍ଧି ନ ଥିବେ । ଅଳଙ୍କାର ଲଗାଇବାକୁ କଣ ସେମାନଙ୍କର ଧନ ନ ଥିଲା ? ତେବେ ଶାସ୍ତ୍ରକାର କାହିଁକି ଲେଖିଲେ ନାହିଁ ଯେ, ଅମୁକ ସ୍ତ୍ରୀ ଏତେ ବିଶା ସୁନା ରୂପା ଅଳଙ୍କାର ଲଗାଇଥିବାରୁ ସେ ପୂଜ୍ୟା ? ଏଥିରୁ କଣ ବୁଝା ଯାଉ ନାହିଁ ଯେ, ଅଳଙ୍କାରଗୁଡ଼ାକ କେବଳ ବାହ୍ୟ ଆଡ଼ମ୍ବର ? ଗୁଣ ନ ଥିଲେ କୌଣସି ସ୍ତ୍ରୀ କେବେ ଖାଲି ଅଳଙ୍କାର ଲଗାଇ ପୂଜ୍ୟା ହୋଇ ନାହିଁ, କି କେବେ ହେବ ନାହିଁ । ତମେ ଶକୁନ୍ତଳାଙ୍କ କଥା ଶୁଣିଛ ?

ସ୍ତ୍ରୀ—ହଁ, ଶୁଣିଛି ।

ସ୍ୱାମୀ—ସେ କିଏ ?

ସ୍ତ୍ରୀ—କଣ୍ୱ ମହର୍ଷିଙ୍କ ପାଳିତା କନ୍ୟା । ସେ ଦୁଷ୍ମନ୍ତ ମହାରାଜଙ୍କୁ ବିବାହ କରିଥିଲେ ।

ସ୍ୱାମୀ—ଯେତେବେଳେ ଦୁଷ୍ମନ୍ତ ମହାରାଜ ମୃଗୟାକୁ ଯାଇ ଅରଣ୍ୟ ମଧ୍ୟରେ ଶକୁନ୍ତଳାଙ୍କୁ ଦେଖିଲେ, ସେତେବେଳେ ତାଙ୍କଠାରେ କେତେ ଠଙ୍କାର ଅଳଙ୍କାର ଥିଲା ?

ସ୍ତ୍ରୀ—ସେ ତ ଋଷିଙ୍କ କୁଡ଼ିଆରେ ଥିଲେ, ଅଳଙ୍କାର କାହୁଁ ପାନ୍ତେ ?

ସ୍ୱାମୀ—ତେବେ ଦୁଷ୍ମନ୍ତ ମହାରାଜ କଣ ଦେଖି ଭୁଲିଲେ ?

ସ୍ତ୍ରୀ—ଶକୁନ୍ତଳାଙ୍କର ଗୁଣ ଦେଖି ଭୁଲିଲେ ।

ସ୍ୱାମୀ—କି ଗୁଣ ଦେଖି ଭୁଲିଲେ ?

ସ୍ତ୍ରୀ—ଶକୁନ୍ତଳାଙ୍କ ସରଳ ପ୍ରକୃତି, ନମ୍ରତା, ଲଜ୍ଜା, ଅତିଥିସତ୍କାର ଇତ୍ୟାଦି !

ସ୍ୱାମୀ—ଏବେ ବୁଝିଲ, ଏ ସୁନା ରୁପା ଅଳଙ୍କାରର କିଛି ମୂଲ୍ୟ ନାହିଁ—ଏଗୁଡ଼ାକ କେବଳ ବାହାର ଭୂଷଣ । ଭିତର ଭୂଷଣ ନ ଥିଲେ କେବଳ ବାହାର ଭୂଷଣଦ୍ୱାରା ମନୁଷ୍ୟ ମନୁଷ୍ୟ ହୁଏ ନାହିଁ ।

ସ୍ତ୍ରୀ—ବୁଝିଲି; ତେବେ ଅଳଙ୍କାରର ଆବଶ୍ୟକତା କଣ ?

ସ୍ୱାମୀ—ଆବଶ୍ୟକତା ବଡ଼ ବେଶୀ କିଛି ନାହିଁ, କେବଳ ଆପଣା ବିଭବ ଦେଖାଇ ହେବାର ଗୋଟାଏ ପନ୍ଥା । ବୁଝିଲେ ଏଥିରେ ସାର ନାହିଁ । ମିଳିଲେ ଲଗାଯାଇ ପାରେ, ନ ଲଗାଇଲେ କିଛି କ୍ଷତି ନାହିଁ । ଏଥିରେ ବାହୁତ ଠଙ୍କା କଉଡ଼ି ବ୍ୟୟ ନ କରି ସେହି ଠଙ୍କା ଅନ୍ୟ ଆବଶ୍ୟକ କାର୍ଯ୍ୟରେ ବ୍ୟୟ କରିବା ଉଚିତ । ତେବେ ଆମ ଦେଶରେ ସଧବା ସ୍ତ୍ରୀମାନଙ୍କର ଅଳଙ୍କାର ଲଗାଇବାର ଗୋଟାଏ ପ୍ରଥା ଅଛି । ସାଧାରଣ ଭାବରେ ଆପଣା ବଳକୁ ଚାହିଁ କେତେକ ଲଗାଇଲେ ହେଲା । ସେଥିଲାଗି ଏତେ ବ୍ୟସ୍ତ ହେବା, ପରର ଦେଖି ଝୁରିହେବା ଉଚିତ ନୁହେ । ଆମ ଦେଶରେ ଏ ଅଳଙ୍କାର ପିନ୍ଧିବା ରୋଗ

ବଡ଼ ବେଶୀ ! ଏବେ ଦେଖୁଛ କେତେ ପ୍ରକାର ଗିଲିଟି ଅଲଙ୍କାର ଆସୁଛି ?

ସ୍ତ୍ରୀ—ହଁ, ସେ ଅଲଙ୍କାର ଗୁଡ଼ାକ ତ ଏବେ ହାଟ ବଜାରରେ ବହୁତ, ଏବେ ତ ସବୁ ମାଇପେ ସେ ଅଲଙ୍କାର କିଣି ପିନ୍ଧିଲେଣି । ସେ ତ ଭାରି ଶସ୍ତା, ଟଙ୍କା ଦିଟା କି ତିନିଟା ଖର୍ଚ୍ଚ କଲେ ଯାକେ ଅଲଙ୍କାର ହେବ । ଗରିବ ଗୁରୁବା ଲୋକଙ୍କର ଭାରି ଉପକାର ହୋଇଛି ।

ସ୍ୱାମୀ—କି ଉପକାର ?

ସ୍ତ୍ରୀ—ସେମାନେ ସୁନା, ରୁପା, ପିତଳ, କଂସା ବା ରସ ଅଲଙ୍କାର କିଣିବାକୁ ଏତେ ପଇସା କେଉଁଠୁ ଆଣନ୍ତେ ? ଶସ୍ତାରେ ସବୁ ଅଲଙ୍କାର ମିଳୁଛି ।

ସ୍ୱାମୀ—ସୁନା, ରୁପା, କଂସା, ପିତଳ, ରସ ପ୍ରଭୃତି ଅଲଙ୍କାର ଯେବେ ଭାଙ୍ଗି ଯାଉଥିଲା, ସେଗୁଡ଼ାକ ବଦଳ ହେଉଥିଲା, ଟଙ୍କାକ ମାଲରୁ ଆଠ ଅଣା ହେଲେ ମିଳୁଥିଲା, ଜାଣଟି କି ? ଆଛା, ଏବେ ଜିନିଷ ବଦଳ ହେଉଛି ?

ସ୍ତ୍ରୀ—ଏଗୁଡ଼ାକ ଆଉ କଣ କେହି ବଦଳ ନେଉଛନ୍ତି କି ? ଏଗୁଡ଼ାକ ଭାଙ୍ଗିଗଲେ ତ ଗଲା—ଖଡ଼ଗଦା ଯୋଗ୍ୟ ! ଏଥିରୁ ଆଉ କଣ ଛଦାମେ ମିଳିବ ?

ସ୍ୱାମୀ—ଏ ଜିନିଷ ସବୁ କେଉଁଠୁ ଆସୁଛି ଜାଣ ?

ସ୍ତ୍ରୀ—ମୁଁ କିପରି ଜାଣିବି ? ଲୋକେ କହୁଆନ୍ତି ଜାପାନ, ଜର୍ମାନି, ବିଲାତ ପ୍ରଭୃତି ଦେଶରୁ ଆସୁଛି ।

ସ୍ୱାମୀ—ସେ କଥା ସତ । ତେବେ ଏ ଅଲଙ୍କାର ବିକି ହୋଇ ପଇସା କଣ ଆମ ଦେଶରେ ରହିଲା ?

ସ୍ତ୍ରୀ—ନା, ଯେ ଅଳଙ୍କାର କରୁଛନ୍ତି ସେ ପଇସା ନେଇ ଯାଉଛନ୍ତି । ଆମ ଦେଶରେ ଆଉ ରହିଲା କପରି ?

ସ୍ୱାମୀ—ତେବେ ଯାହାକୁ ଯେତିକି ପଇସା ମିଳୁଛି, ସେ ସେତିକି ପଇସାରେ ସୁନା, ରୂପା ପ୍ରଭୃତି ଅଳଙ୍କାର କରୁଥିଲେ ଆମ ଦେଶ ପଇସା ଆମ ଦେଶରେ ରହୁ ନ ଥାନ୍ତା କି ?

ସ୍ତ୍ରୀ—ରହୁ ନ ଥାନ୍ତା କଣ ? ଆମ ଦେଶ ଲୋକେ କାହିଁ ସେପରି ଜିନିଷ କରି ପାରୁଛନ୍ତି ? ତେବେ ମରଦମାନେ ମିଶି ସ୍ୱଦେଶୀ ଜିନିଷ ପରି ଜିନିଷ ତିଆରି କରୁନାହାନ୍ତି ? ମାଇପଙ୍କୁ କହିଲେ କଣ ହେବ ?

ସ୍ୱାମୀ—ଆହେ, ମାଇପେ ବୁଝିଲେ ବେଶୀ କାମ ହେବ । ମାଇପେ ତ ଯେତେ ଅନର୍ଥର ମୂଳ । ମାଇପେ ଯଦି ଏ ଗିଲିଟି ଅଳଙ୍କାର ତାକ କଣ୍ଠି ନ ପିନ୍ଧନ୍ତେ, ଆମ ଦେଶରେ କେତେ ପଇସା ରହନ୍ତା ! ମାଇପେ ଯେବେ ଯାହା ତୀର୍ଥକୁ ଗଲେ, ତେବେ ଦିଅଁ ଦେଖା ପଛକୁ ରଖି ଖଡୁ ମୁଦି ଦୋକାନରୁ ଅଳଙ୍କାର କଣି ବସିଲେ । ଘରୁ ବାହାରିଲା ବେଳୁ ଅଗ ସେହି କଥା, ବାଟରେ ସେହି କଥା । ଦିଅଁ ଦର୍ଶନରେ ଯେତେ ଭକ୍ତି ନ ଥାଏ ଅଳଙ୍କାର କଣାରେ ଭକ୍ତି ବେଶୀ । ମାଇପେ ଯେବେ ଅଳଙ୍କାର ଲୋଭ ଛାଡ଼ି ଏ ଜିନିଷ ନ କଣନ୍ତେ, ତେବେ ଏଗୁଡ଼ାକ କଣ ଆଉ ବିକି ହୁଅନ୍ତା ? ଆଉ ଗୋଟିଏ କଥା ଦେଖ, ମୁଁ ଆରଦିନ ପୁଅ ପ୍ରତି ମାତାର କି କର୍ତ୍ତବ୍ୟ ତାହା ତମକୁ ବୁଝାଇ ଦେଇଥିଲି, ମନେ ଅଛି ଟିକି ?

ସ୍ତ୍ରୀ—ହଁ, ମନେ ଅଛି ।

ସ୍ୱାମୀ—ମାଇପେ ବୁଝିଲେ ପିଲାମାନଙ୍କୁ ବୁଝାଇବେ । ଆପଣା ଦେଶ କଥା ପିଲାମାନଙ୍କ କାନରେ ବେଳସୁଁ ପଡ଼ିଲେ ପିଲାମାନେ

ପାଠ ପଢ଼ିବା ସଙ୍ଗେ ସଙ୍ଗେ ଆପଣା ଦେଶ କଥା ଭାବିବେ । ଆପଣା ଦେଶରେ କାହାର ଦେଶ ପରି ଧା ରହିବ ସେ କଥା ଚିନ୍ତା କରିବେ । ଏଇ ମଣିଷ ତ ସେ ଜିନିଷ ସବୁ କରୁଛନ୍ତି । ଆମେମାନେ ତ ସେହି ମଣିଷ, ଆମର ତ ବୁଦ୍ଧି ଅଛି, ଯତ୍ନ କଲେ ଆମେ କଣ କରି ପାରିବା ନାହିଁ ? ସେ ଦେଶକୁ ଯାଇ ଦେଖି ଆସିବା, ଶିଖି ଆସିବା !

ସ୍ତ୍ରୀ—ମୁଁ ଜଣେ ବୁଝିଲେ କଣ କରିବ ?

ସ୍ୱାମୀ—ଜଣେ ବୁଝିଲେ ଢେର କାମ ହେବ । ଜଣେ ବୁଝିଲେ ସେ ଆଉ ଜଣକୁ କହିବ, ସେ ଆଉ ଜଣକୁ କହିବ, ଏହିପରି ଅନେକ ବୁଝିଯିବେ ।

ସ୍ତ୍ରୀ—ତେବେ କହିଲ ଅଳଙ୍କାର କିଣି ଘରେ ରଖାଇଲେ ଲାଭ ନାହିଁ, ବରଂ କ୍ଷତି—କାହିଁକି ? ଯେତେବେଳେ ସେ ପଦାର୍ଥକୁ ବିକିଦେବ କଣ ଦେଖା ମିଳିବ ନାହିଁ ?

ସ୍ୱାମୀ—ମୂଳ ନଷ୍ଟ ହେବ ବୋଲି ମୁଁ କହୁ ନାହିଁ । ଟଙ୍କା ବା ସୁନା ରୁପାକୁ ଯୋଡ଼ି ରଖିଲେ ତ ସେଥିରୁ ବୃଦ୍ଧି ହେବ ନାହିଁ । ଚୋର ନେଲେ ସବୁ ଯିବ, ନ ହେଲେ ମୂଳ ଥୁଆ ହୋଇଥିବ, ଆଉ ତ ବୃଦ୍ଧି ହେବ ନାହିଁ ।

ସ୍ତ୍ରୀ—ଧନ ବୃଦ୍ଧି ହୁଏ କିପରି ମ ? ଟଙ୍କା କଣ ଟଙ୍କା ଜନ୍ମ କରେ ?

ସ୍ୱାମୀ—ନିଶ୍ଚୟ ! କରଜ ଲଗାଇଲେ ଟଙ୍କାକ ଗୁଡ଼ିଏ ବର୍ଷରେ ସୁଧ ସହିତ ଦୁଇ ଟଙ୍କା ହେବ, ଟଙ୍କାରେ ଜମି କିଣିଲେ ଧାନ ମିଳିବ, ବେପାର ବଣିଜରେ ଟଙ୍କା ଲଗାଇଲେ ଟଙ୍କାକରୁ ଦୁ ଟଙ୍କା ମିଳିବ—ଟଙ୍କାରୁ ଟଙ୍କା ଜନ୍ମ ହୁଏ ନାହିଁ ତ ହୁଏ କେଉଁଠାରୁ ? କିନ୍ତୁ ଘରେ ଯେଉଁ ଟଙ୍କା ବା ଅପୂ ଅଳଙ୍କାର ରଖିବ, ସେଥିରୁ ଅଉ ଫଟୋପାହୁଲା ଅଧିକା ହେବାର ଶୁଣିଛ ?

ଯେତେ ଟଙ୍କାର ଅସ୍ତ୍ର ଅଳଙ୍କାର ପାଇଁ ରଖିବ, ସେତିକ କାରବାର କଲେ କେତେ ଲାଭ ମିଳିବ ? ଆମ ଦେଶ ମାଇପେ ତ କିଛି ବୁଝିଲେ ନାହିଁ ।

ସ୍ତ୍ରୀ—ଯାହା କହିଲ ବୁଝିଲି ଆଉ ଏଣିକି ତମକୁ ଅଳଙ୍କାର କଥା କହିବି ନାହିଁ ।

ସ୍ୱାମୀ—ଅହେ, ତମେ ଅଳଙ୍କାର କଥା କହିଲ ବୋଲି କହୁ ନାହିଁ ଯେ, କଥାଟାକୁ ଭାବି ଦେଖିଲ କଣ ହେଉଛି ?

ସ୍ତ୍ରୀ—ହଁ, ନୁହେ କଣ, ଯାହା କହିଲ ଅକ୍ଷରେ ଅକ୍ଷରେ ସତ । ଆମକୁ ଏପରି କେହି ବୁଝାଇ ଦେଇଥିଲେ ସିନା ବୁଝନ୍ତା !

ସ୍ୱାମୀ—ଅଛି, ଏବେ ବୁଝ, ମୁଁ ଯାଉଛି ।

---

## ତୃତୀୟ ପରିଚ୍ଛେଦ

ସ୍ତ୍ରୀ—କେତେ ରାତି ହେଲଣି, କୁଆଡ଼େ ବୁଲୁଥାଅ ମ ? ଭାତତରକାରି ଶୁଖିଗଲଣି ।

ସ୍ୱାମୀ—ଆଜି ଗୋଟିଏ ସଭା ହେଉଥିଲା ଯେ ସେଠାକୁ ଯାଇଥିଲି ।

ସ୍ତ୍ରୀ—ଆଜି ପୁଣି କି ସଭା ହେଉଥିଲା ମ ?

ସ୍ୱାମୀ—ଆଜି କଟକର ଯୋଗେଶବାବୁ ଅସି ସ୍ତ୍ରୀଶିକ୍ଷା ସମ୍ବନ୍ଧରେ ବକ୍ତୃତା ଦେଉଥିଲେ ।

ସ୍ତ୍ରୀ—ତମ କଥା ଶୁଣିଲେ ହସ ମାଡ଼େ । ମରଦଙ୍କର ତ ଆଉ କିଛି ବେପାର ନ ଥାଏ, ଏଇଥିରୁ ଗୁଡ଼ାଏ ବାଗୁର ଧରି ବସିଥାନ୍ତି । ମାଇପେଗୁଡ଼ାକ କାହିଁକି ପାଠ ପଢ଼ିବେ ମ ? କଣ ହାକିମ ହେବେ, ନା ଓକିଲ ହେବେ ?

ସ୍ୱାମୀ—ଖାଲି ହାକିମ ଓକିଲ ହେବାପାଇଁ କଣ ପାଠ ପଢ଼ିବା ଆବଶ୍ୟକ ?

ସ୍ତ୍ରୀ—ଆଉ ମାଇପେ ପାଠ ପଢ଼ିବେ କାହିଁକି ? ମାଇପଙ୍କର ଘର ପାଇଟି କରୁ କରୁ ଦିନ ଯିବ, ପାଠ ପଢ଼ି କଣ କରିବେ ? ଏବେ ଗୋଟାଏ ଗୋଟାଏ ଇସ୍କୁଲ ବସାଇ ମାଇକିନିଆ ଝିଅଙ୍କୁ ପାଠ ପଢ଼ାଉଛନ୍ତି, ଫଳ କଣ ହେଉଛି ଦେଖୁଛ ଟିକି ?

ସ୍ୱାମୀ—କଅଣ ଫଳ ହେଉଛି ?

ସ୍ତ୍ରୀ—କଣ ହେଉଛି, ଶୁଣୁ ନାହିଁ ? ରାମ ପଟ୍ଟନାୟକଙ୍କ ଝିଅ ପାଠ ପଢ଼ିଛି, ଏଫ୍. ଏ. ପାଶ୍ କରିଛି । ଏବେ ଶାଶୁଘରକୁ ଗଲାଦିନୁ ଖାଲି ବହି ଧରି ଖଟ ଉପରେ ବସିଛି, ଶାଶୁ ଶଶୁରଙ୍କୁ ମାନିବାକୁ ନାହିଁ, ସ୍ୱାମୀ ବେଶୀ ପାଠ ପଢ଼ି ନାହିଁ ବୋଲି ସ୍ୱାମୀକି ଖାତିର କରେ ନାହିଁ । ଘର କାମଦାମ ତ କିଛି ବୁଝେ ନାହିଁ, ଆଉ କେତେ କେତେ କଥା, କଅଣ ତମ ଆଗରେ ସେଗୁଡ଼ାକ କହିବି, ଶୁଣୁ ନ ଥିବ ଯେ ?

ସ୍ୱାମୀ—ହଁ, ମୁଁ କିଛି କିଛି ଶୁଣିଛି; ମାତ୍ର ଏସବୁ କଣ ପାଠର ଦୋଷ ?

ସ୍ତ୍ରୀ—ପାଠର ଦୋଷ ନୁହେ ତ ଆଉ କାହାର ଦୋଷ ?

ସ୍ୱାମୀ—ନା, ନା, ତମ ବୁଝିବାର ଭୁଲ ! ବିଦ୍ୟାର କିଛି ଦୋଷ ନାହିଁ । ଯାହା ପେଟରେ ପ୍ରକୃତ ବିଦ୍ୟା ଥିବ, ସେ କଣ ଏପରି ହେବ ? ପାଠ ଅଛି ପରା, ଯେଉଁ ଗଛରେ ବେଶୀ ଫଳ ସେ ଗଛ ନଇଁପଡ଼େ, ଯେଉଁ ମଣିଷର ଗୁଣ ବେଶୀ ସେ ମଣିଷ ବିନୟୀ ହୁଏ; ମାତ୍ର ଯେ ମୂର୍ଖ ସେ ଠେଙ୍ଗାପରି ଭାଙ୍ଗିଯାଏ ପଛକେ ନଏଁ ନାହିଁ । ବିଦ୍ୟା ମନୁଷ୍ୟକୁ ସଦ୍‌ଜ୍ଞାନ ଦିଏ,

ବିଦ୍ୟା ପଢ଼ିଲେ କେଉଁ ଲୋକ ଏପରି ଆଚରଣ କରିବ ? ଯେଉଁମାନେ ଅଳ୍ପ ଗୁଡ଼ାଏ ଅକ୍ଷର ପଢ଼ି ଆପଣାକୁ ଆପେ ବଡ଼ ବୋଲି ମନେ କରନ୍ତି ସେମାନେ କେବଳ ରାମ ପଟ୍ଟନାୟକଙ୍କ ଝିଅ ପରି ହୁଅନ୍ତି । ତାଙ୍କୁ ମୂର୍ଖ ବୋଲି କହିବାକୁ ହେବ । ସେ ପ୍ରକୃତରେ ପାଠୁଆ ହୋଇଥିଲେ ଏପରି ଆଚରଣ କରନ୍ତେ ନାହିଁ । ବହି ପଢ଼ି ଯେ ଭଲ ଗୁଣ ଶିକ୍ଷା ନ କଲା, ତା ପାଠପଢ଼ାରୁ କଣ ମିଳିବ ? ସୁତରାଂ ପାଠର କିଛି ଦୋଷ ନାହିଁ । ପାଠ ନ ପଢ଼ିଥିବା ମାଇପଙ୍କର କଣ କିଛି ବଦ୍‌ଆଚରଣ ଦେଖାଯାଏ ନାହିଁ ? ସୁତରାଂ ମାଇପଙ୍କର ପାଠ କିଛି କିଛି ପଢ଼ିବା ନିତାନ୍ତ ଆବଶ୍ୟକ ।

ସ୍ତ୍ରୀ—ମାଇପେ କେଉଁ କାଳେ ପାଠ ପଢ଼ୁଥିଲେ ମ ?

ସ୍ୱାମୀ—ଭଲା ମାଇପେ ପାଠ ପଢ଼ୁ ନ ଥିଲେ ? ସରସ୍ୱତୀ ଯେ କି ବିଦ୍ୟାର ମାଲିକ ସେ କଣ ମାଇକିନିଆ ନା ଅଣ୍ଡିରି ? ସେ ସବୁଠାରୁ ବେଶୀ ପାଠ ଜାଣିଥିଲେ ବୋଲି ସିନା ଆଜି ଦେବତା ହୋଇ ପୂଜା ପାଉଛନ୍ତି ! ଖନା, ଲୀଳାବତୀ, ଉଭୟ ଭାରତୀ ଆଦି କେତେ ସ୍ତ୍ରୀଲୋକ ପାଠ ପଢ଼ିଥିଲେ । ତେବେ ଶାସ୍ତ୍ର ପଢ଼ିଲେ ସିନା ଜାଣନ୍ତି- ନୋହିଲେ ଜାଣିବେ କପରି ?

ସ୍ତ୍ରୀ—ଆମେ ତ ସକାଳୁ ଉଠି ଘର ଜଞ୍ଜାଳ ବୁଝୁ ବୁଝୁ ଦିନ ଅସ୍ତ, ନାହିଁ, ପାଠ ପଢ଼ି କଣ କରିବୁ ?

ସ୍ୱାମୀ—ଘର ଜଞ୍ଜାଳ ବୁଝିବା ଲାଗି କଣ ପାଠର ଆବଶ୍ୟକତା ନାହିଁ ? ପାଠ ପଢ଼ିଲେ ବୁଦ୍ଧି ଭଲ ହୁଏ, ନାନା ଦିଗକୁ ଆଖି ଫୋଟେ, ଯାହାର ବୁଦ୍ଧି ଓ ଜ୍ଞାନ ଯେତେ ବେଶୀ, ସେ ସେତେ ଉତ୍ତମ ଭାବରେ ଗୃହ ଜଞ୍ଜାଳ ନିର୍ବାହ କରି ଘରକୁ ସ୍ୱର୍ଗରେ ପରିଣତ କରେ ।

ସ୍ତ୍ରୀ—ଆମ୍ଭେମାନେ ପାଠ ନ ପଢ଼ିଲୁ ବୋଲି ଘର କଣ୍ଟାଳ କଥା କଣ କିଛି ବୁଝୁ ନାହୁଁ ?

ସ୍ୱାମୀ—ଅହେ, ନ ବୁଝୁଛ ବୋଲି କିଏ କହିଲା ? ପାଠ ପଢ଼ି ବେଶି ଜ୍ଞାନ ହେଲେ କାମ ଅଦ୍ଭୁତ ସୁନ୍ଦରରୂପେ ହୋଇଥାନ୍ତା । ସ୍ତ୍ରୀ ହେଲା ଘରର ଘରଣୀ; ଘରର ସବୁ ହାନି ଲାଭ ସ୍ତ୍ରୀ ଉପରେ ନିର୍ଭର କରେ । ମାଇପଙ୍କର କଣ ଛୋଟା କାମ ? ପାଠ ପଢ଼ିବା ଅର୍ଥ କେବଳ ପୋଥି ପଢ଼ିବା ନୁହେ, ପୋଥି ପଢ଼ି ସେଥିରେ ଯେଉଁ ସବୁ ଭଲ ଭଲ ଉପଦେଶ ଲେଖାଥାଏ ସେଗୁଡ଼ିକ ଶିଖି ତା ଅନୁସାରେ କାର୍ଯ୍ୟ କରିବା ଅର୍ଥ ପ୍ରକୃତ ଶିକ୍ଷା । ପୋଥିରେ ପଢ଼ିଲ, "ମିଥ୍ୟା କହିବା ମହାପାପ" । ଖାଲି ପଢ଼ିଲେ କଣ ହେବ, ପଢ଼ି ସାରିବା ପରେ ଯେ କହିବ—ଶାସ୍ତ୍ର ଯେତେବେଳେ କହୁଛି ମିଥ୍ୟା କହିବା ମହାପାପ, ସେତେବେଳେ ମୁଁ ଆଉ କେବେ ମିଥ୍ୟା କହିବି ନାହିଁ, ଏକଥା ମନରେ ସଂକଳ୍ପ କରି ଯେ ଆପଣା ଜୀବନରେ କେବେ ହେଲେ ମିଥ୍ୟା ନ କହେ ତାହାର ପ୍ରକୃତ ଶିକ୍ଷା ହେଲା ବୋଲି କହିବାକୁ ହେବ । ସୁତରାଂ ଶାସ୍ତ୍ର ପଢ଼ିଲେ ଅନେକ ଉପଦେଶ ଜାଣି ପାରିବ । ପିଲାଙ୍କୁ କିପରି ପାଳିବ, ଶାଶୁ ଶ୍ୱଶୁର ଗୁରୁଜନମାନଙ୍କ ପ୍ରତି କିପରି ବ୍ୟବହାର କରିବ, ସାଇପଡ଼ିଶା ଚାକରବାକରଙ୍କ ପ୍ରତି କିପରି ବ୍ୟବହାର କରିବ, ନାନାପ୍ରକାର ଖାଦ୍ୟଦ୍ରବ୍ୟ କିପରି ପ୍ରସ୍ତୁତ କରିପାରିବ, ଗୃହ ଖର୍ଚ୍ଚର କିପରି ହିସାବ ରଖିବ, କିପରି ପରିମିତ ବ୍ୟୟ କରିବ, ଏ ସମସ୍ତ ଶିକ୍ଷା ଲାଗି ପାଠ ପଢ଼ିବା ଆବଶ୍ୟକ । ଘରର ଘରଣୀ ହେଲେ ଅଦ୍ଭୁତ ଅନେକ କଥା ଜାଣିବା ଆବଶ୍ୟକ । ସ୍ୱାସ୍ଥ୍ୟବିଜ୍ଞାନ, ଧାତ୍ରୀବିଦ୍ୟା, ଚିକିତ୍ସାବିଦ୍ୟା, ଅତିଥିସତ୍କାର

ପ୍ରଭୃତି ନାନା କଥା ଘରଣୀର ଜାଣିବା ଆବଶ୍ୟକ । ଏସବୁ ବିଦ୍ୟାରୁ ଟିକିଏ ଟିକିଏ ଜାଣିବା ସ୍ତ୍ରୀ ପକ୍ଷରେ ନିତାନ୍ତ ଆବଶ୍ୟକ ।

ସ୍ତ୍ରୀ—ଆଉ ଏ ବୟସରେ ବୁଢ଼ୀଏ ପାଠ ପଢ଼ିବ ?

ସ୍ବାମୀ—ଆଗୋ, ପାଠ ପଢ଼ିବା ଲାଗି ବୟସ ଲୋଡ଼ା ନାହିଁ, ଅକ୍ଷର ପରିଚୟ ହେଲେ ଆପଣା ମନକୁ କେତେ ପୋଥି ପଢ଼ି ପକାଇବ । ଦେଶରେ ଅନେକ ଖବରକାଗଜ ବାହାରୁଛି; ଯେତେବେଳେ ଗୃହ କଞ୍ଜାଳ ସାରି ଟିକିଏ ଫୁରସତ ମିଳିବ, ସେତେବେଳେ ଖଣ୍ଡେ ଖବରକାଗଜ ପଢ଼ିଲେ କେତେ ଦେଶର କେତେ ଖବର ବୁଝି ପାରିବ । ଆଉ ଗୋଟିଏ କଥା ଦେଖ, ମା ଯେବେ ଟିକିଏ ପାଠର ସ୍ବାଦ ପାଇଥିବ ତେବେ ସେ ପିଲାମାନଙ୍କୁ ବାଲ୍ୟ ବୟସରୁ ପାଠ ଆଡ଼କୁ ମଡ଼ାଇଦେବ, ପିଲାମାନଙ୍କୁ ବାଲ୍ୟ କାଳରୁ ନାନାପ୍ରକାର ଭଲ ଉପଦେଶ ଶୁଣାଇବ । ବିଦ୍ୟାର ଉପକାରିତା କେତେ କହିଲେ ଶେଷ ହେବ ?

ସ୍ତ୍ରୀ—ମୁଁ କଣ ଏ ଦିନେ ଯାଇ ସ୍କୁଲରେ ପଢ଼ିବି ?

ସ୍ବାମୀ—ସ୍କୁଲରେ କଣ କେବଳ ପାଠପଢ଼ା ହୁଏ ? ମୁଁ ତ କହୁ ନାହିଁ ଯେ, ମାଇପେ ସବୁ ସ୍କୁଲକୁ ଯାଇ ପାଠ ପଢ଼ନ୍ତୁ । ଯାହାର ମନ ଥିବ, ସେ କଣ ଆପଣା ଘରେ ବସି ପାଠ ପଢ଼ି ପାରିବ ନାହିଁ ? ଶିକ୍ଷା ଅର୍ଥ ନିଜେ ଶାସ୍ତ୍ର ପଢ଼ି ଶିଖିବ, ନୋହିଲେ ଅନ୍ୟ କିଏ ପଢ଼ିଲା, ତାଠାରୁ ଶୁଣି ଶିଖିବ । ଅନ୍ୟଠାରୁ ଶୁଣି ଶିଖିବାକୁ ହେଲେ ପର ଅନୁସରଣ କଥା ହେଲା । ଆପଣାର ଅକ୍ଷର ପରିଚୟ ଥିଲେ ନିଜେ ପୋଥି ପଢ଼ି ନେବ । ସେଥିଲାଗି ତମକୁ କେତେ ଥର କହୁଛି,-ଖଣ୍ଡେ

ବସ୍ତିରେ ଧକ୍କ ଆଣି ପଢ଼ି ପକାଅ । ତମେ ତ ଶୁଣିବ ନାହିଁ !
ସେବେଳେ କହିବ "ମାଇପେ ପାଠ ପଢ଼ି କଣ କରିବେ ?"

ସ୍ତ୍ରୀ—ଅଚ୍ଛା, ଏଣିକି ପଢ଼ିବି । ମତେ ପଢ଼ାଇ ଦେବ କିଏ ?

ସ୍ୱାମୀ—କହେ, କେହି ନ ମିଳିଲେ ଅପଣା ସ୍ୱାମୀଠାରୁ ଶିଖି ନେବ । ସ୍ୱାମୀ ତ ସ୍ତ୍ରୀର ସବୁ ବିଷୟରେ ପରମଗୁରୁ । ପାଠ ପଢ଼ି ଦେଶର ହାଲଚାଲ ଜାଣିଲେ ମନରେ କପରି ସାହସ ହୁଏ, ସେ କଥାର ଗୋଟିଏ ଉଦାହରଣ ଦେବା ଶୁଣ ! ଜାପାନ ଦେଶରେ ଗୋଟିଏ ବିଧବା ସ୍ତ୍ରୀ ଲୋକ ଥିଲା । ମାଅଟି ପୁଅଟି; ଆଉ କେହି ନାହିଁ । ମାଅଟି ପାଠ ପଢ଼ିଥିଲା । ଭାରି ପଣ୍ଡିତା । ପୁଅଟି ଏକୋଇର ବଳ, ଅନ୍ଧର ଲଉଡ଼ି । ବୁଢ଼ୀ ପୁଅଟିକୁ ବଡ଼ ସ୍ନେହ କରୁଥାଏ । ଏପରି ଦୁଇ ଜଣ ଥାନ୍ତି । କେତେ ଦିନ ପରେ ଜାପାନ ଦେଶ ସାଥିରେ ରୁଷିଆ ଦେଶର ଯୁଦ୍ଧ ହେଲା । ଲଢ଼େଇ ଜାଗାରେ ଲକ୍ଷ ଲକ୍ଷ ଲୋକ ହାଣ ଖାଉଛନ୍ତି, ତୋପ ଗୁଳିରେ ପାଉଁଶ ହୋଇ ଯାଉଛନ୍ତି, ଜାହାଜ ବୁଡ଼ିଯାଇ ପାଣିରେ ବୁଡ଼ି ମରୁଛନ୍ତି, ସେହିପରି କେତେ କେତେ ଘଟଣା ଦେଖିବା ଦୂରେ ଥାଉ, ଶୁଣିଲେ ମଣିଷର ପ୍ରାଣ ଛାଡ଼ିଯିବ । ଏହି ସମୟରେ ଜାପାନ ଦେଶରୁ ଲକ୍ଷ ଲକ୍ଷ ଲୋକ ଯୁଦ୍ଧକୁ ଯାଉଥିବା ଶୁଣି ସେ ବୁଢ଼ୀ-ପୁଅର ମନ ଟେକିଲା । ସେ ମାକୁ କହିଲା, "ମାଅ, ମୋତେ ଅନୁମତି ଦେଲେ ମୁଁ ଯୁଦ୍ଧକୁ ଯିବି ।" ଅଚ୍ଛା, କହିଲ ଦେଖି ତମେ ହୋଇଥିଲେ ପୁଅକୁ କଣ କହିଥାନ୍ତ ?

ସ୍ତ୍ରୀ—ଆଲୋ, ମତେ କଣ କହୁଛ ଲୋ ! ମୁଁ ହୋଇଥିଲେ ପୁଅକୁ ଯିବାକୁ ମନା କରିଥାନ୍ତି । କେହି ଧରି ନେବାକୁ ଆସିଲେ ପୁଅକୁ ହାଣ୍ଡିତଳେ ତା ହେଁସ ତଳେ ଘୋଡ଼ାଇ ରଖନ୍ତି ।

କାଣୁ କାଣୁ କପରି ବାଘମୁହଁକୁ ପିଲଟାକୁ ପଠାଇ ଦିଅନ୍ତି ମ ?
ଏଥିରୁ ବଳିଲେ ମା ମଙ୍ଗଳାକୁ ମୁଣ୍ଡେ କୁକୁଡ଼ା ଓ କାନ୍ଦି
ପଣନ୍ତ ଯାଚି ବିଡ ବିଡ ସେ ରଜା ରାଇଜ ଛାଡ଼ି ପଳାଇ ଯାନ୍ତି ।

ସ୍ୱାମୀ—ଉତ୍ତମ କଥା ! ଆଚ୍ଛା, ସେ ବୁଢ଼ୀ କଣ କରିଥିବ ତମର ଅନୁମାନ ହେଉଛି କହିଲ ?

ସ୍ତ୍ରୀ—ମୁଁ ଯାହା କହିଲି, ସେ ସେଇଆ କରିଥିବ !

ସ୍ୱାମୀ—ନାହିଁ ! ନାହିଁ ! ବୁଢ଼ୀ କହିଲା, "ଆରେ ପୁଅ, ତତେ ଦଶମାସ ଦଶଦିନ ପେଟରେ ଧରି ପିଢା ପାଣି ଖାଇ ଯେଉଁ ଦୁଃଖ ପାଇଥିଲି, ଆଜି ତୋ କଥା ଶୁଣି ସେ ସବୁ ଦୁଃଖ ପାସୋରିଲି । ଆଜି ମୋ ଜୀବନ ଧନ୍ୟ ହେଲା ବୋଲି ମୁଁ ମନେ କରୁଛି । ଏ ଜୀବନ ତ କ୍ଷଣସ୍ଥାୟୀ । ଜନ୍ମିଲେ ଅବଶ୍ୟ ଦିନେ ମରିବ, କେହି ତନ୍ତ୍ରମନ୍ତ୍ର ବାନ୍ଧି ଏ ସଂସାରରେ ରହି ନାହିଁ କି ରହିବ ନାହିଁ । ଶୁଣିଛି ଲୋକ ଲଢ଼ାଇରେ ମଲେ ସ୍ୱର୍ଗକୁ ଯାଏ । ଆପଣା ଦେଶଲାଗି ଯେଉଁମାନେ ମରନ୍ତି, ସେମାନଙ୍କ ଜୀବନ ଧନ୍ୟ । ମୁଁ ତୋର ଗର୍ଭଧାରିଣୀ, ବାଘ-ମୁହଁକୁ ପଠାଇ ଦେବାକୁ ମୋର ସତ ବଳୁ ନାହିଁ । ମନଟା କପରି ହେଉଛି ସତ, କିନ୍ତୁ ପୁଣି ମନେ ହେଉଛି, ତୁ ଯେବେ ଯୁଦ୍ଧରେ ଜୟୀ ହୋଇ ଫେରି ଆସୁ, ତେତେବେଳେ ମୋ ମନରେ କି ଆନନ୍ଦ ହେବ । ସେ ଆନନ୍ଦକୁ କି ଏ ଦୁଃଖ ସରି ହେବ ।" ମା ପୁଅର ହାତକୁ ଗୋଟିଏ ଖଣ୍ଡା ବଢ଼େଇ ଦେଇ କହିଲା,"ପୁଅ ନେ ନେ, ଏ ଅସ୍ତ୍ର ନେଇ ଯା, ଭଗବାନ ତୋର ମଙ୍ଗଳ କରନ୍ତୁ, ତୁ ଯୁଦ୍ଧଲେ ଜୟୀ ହୋ, ବାପ ନାମ ରଖ୍, ଆପଣା ଜାତି ଆପଣା ଦେଶର ମାନ ରଖ୍ । ମନେ ରଖ୍ କେହି ଯେପରି ନ କହେ, ଜାପାନୀମାନେ କାପୁରୁଷ, ଭୀରୁ,

ଉଠନ୍ତୁଲା ! ଲୋକ ମରିପାଇ ପାରେ, ଜାତ ମରିବ ନାହିଁ । ତୁ ଯଶ ଅର୍ଜିଲେ ଜାପାନ ଜାତିର ଯେ ଯଶ । ମୁଁ ତତେ ଜନ୍ମ ଦେଇଛି ସତ, ମାତ୍ର ତୁ ଜାପାନୀ, ତୋ ଦ୍ୱାରା ଜାପାନର କୌଣସି ମଙ୍ଗଳ ହେଲେ ମୁଁ ତତେ ଜନ୍ମ କରିବାର ସାର୍ଥକ ହେବ । ଯାହାର ପୁଅ ସୁପୁତ୍ର, ସେହି କେବଳ ପ୍ରକୃତ ମାତା । ଯା, ବିଳମ୍ବ କର ନା. ଭଗବାନ ତତେ ସହାୟ ହେବେ— ମୋର ଏହି ଆଶୀର୍ବାଦ ।"

ସ୍ତ୍ରୀ—ଓଃ, ମାଆ କାଆଁ ଲାଗିଥିବା କପରି ଏ କଥା କହିଲା ମ ? ସେଇଟା ମା ନା ଡାହାଣୀ ? ପୁଅଟାକୁ ହାଣମୁହଁକୁ ପଠାଇ ଦେବାକୁ ତା ଯିବ ବଳିଲା କପରି ? ମୁଁ ତ ଶୁଣୁ ଶୁଣୁ ମୋ ଛାତି ଥରୁଛି ! ମୋ ଆଖିରେ ତ ଲୁହ ରହୁ ନାହିଁ !!

ସ୍ୱାମୀ—ତମ ଆଖିରେ ବେଶୀ ଲୁହ ଅଛି । ଆଚ୍ଛା, ସେ ଯେଉଁ କଥା-ଗୁଡ଼ିକ କହିଲା, ସେ ଗୁଡ଼ିକ କଣ ମିଛ ?

ସ୍ତ୍ରୀ—ନା ନା କଥାଗୁଡ଼ିକ ମିଛ କାହିଁକି ? କଥାଗୁଡ଼ିକ ଅକ୍ଷରେ ଅକ୍ଷରେ ସତ୍ୟ । କିନ୍ତୁ ପୁଅ ବୋଲି ତ ଗୋଟିଏ !

ସ୍ୱାମୀ—ଗୋଟିଏ ହେଉ ବା କୋଟିଏ ହେଉ, ପୁଅ ଯୋଗ୍ୟ ହେଲେ ଯିନା ମା ବାପଙ୍କ ନାଁ ପଡ଼େ, ଦେଶ ନାଁ ପଡ଼େ; ଘରେ ପେଣ୍ଡରେ ପଶି ରହିଲେ କିଏ ଜାଣିବ, କି କାମକୁ ଆସିବ ? କେବଳ ଗେଲବସର କରି ପୁଅକୁ ସ୍ନେହ କଲେ କଣ ହେବ ?

ସ୍ତ୍ରୀ—ମୋ ପୁଅଟି କଥା ମୁଁ କହିଲି ନା ?

ସ୍ୱାମୀ—ତମ ପୁଅଟି କଥା ତମେ କହିଲ, ସମସ୍ତେ ଦେବେ ସମସ୍ତଙ୍କ ପୁଅ କଥା ଏପରି କହନ୍ତି, ତେବେ ଫଳ କଣ ହେବ ?

ସ୍ତ୍ରୀ—ହଁ, ଯାହା କହୁଛ ସତ, କିନ୍ତୁ ତା କପାଳେ ଯାହା ଥିବ ସେ ତା ଭୋଗ କରିବ ।

ସ୍ୱାମୀ—କପାଳେ ଥିବ କଣ ?

ସ୍ତ୍ରୀ—ଷଠୀଦୁଷେଇ ତା କପାଳରେ ଯାହା ଗାର କାଟି ଦେଇଥିବ, ସେ ତାହା ଭୋଗ କରିବ ।

ସ୍ୱାମୀ—ଷଠୀଦୁଷେଇ କଣ ଏପରି ଲେଖି ଦେଇଥାନ୍ତି; ମୁଁ ତ ଏକଥା ଜାଣି ନ ଥିଲି; ତେବେ ଜଣେ ମଣିଷ କିଛି କରିପାରିବ ନାହିଁ ?

ସ୍ତ୍ରୀ—ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରେ ତେଣିକି ଯାଇ—ଏଥିର ପର୍ ଜ୍ଥା ଅଛି ?

ସ୍ୱାମୀ—ତେବେ ଏ ବର୍ଷ ବିଲରେ ଧାନ ବୁଣିବା ନାହିଁ; ଆମ କପାଳରେ ଥିଲେ ମନକୁ ଧାନ ହେବ ଯେ !

ସ୍ତ୍ରୀ—ଧାନ ନ ବୁଣିଲେ ଗଛ ହେବ କିପରି ?

ସ୍ୱାମୀ—ତମେ ପରା କହୁଛ ଯାହା କପାଳରେ ଥିବ, ସେ କଥା ଅବଶ୍ୟ ହେବ; ତେବେ ଆମ କପାଳେ ଥିଲେ ଧାନ ନ ବୁଣି ବିଲରେ ଧାନ ଗଛ ହେବ ।

ସ୍ତ୍ରୀ—ଏପରି ତ କାହିଁ ଦେଖା ନାହିଁ ।

ସ୍ୱାମୀ—ତେବେ ତମ କଥା ଭୁଲ୍ । ମଣିଷ ଯାହା କରିବ ତାର ଫଳ ପାଇବ । କାମ ନ କଲେ କିଛି ଫଳ ପାଇବ ନାହିଁ । କର୍ମ ଅର୍ଥ କପାଳ ନୁହେଁ, କର୍ମ ଅର୍ଥ କାମ । ତମେ ଯାହା କହୁଛ, କପାଳେ ଯାହା ଥିବ ତାହା ହେବ, ତେବେ ଆଉ ପୁଅକୁ ବିଦ୍ୟାଳୟକୁ ପଠାଇବାର କିଛି ଆବଶ୍ୟକ ନାହିଁ; ତା କପାଳେ ଥିଲେ ସେ ଆପଣା ମନକୁ ଘରେ ବସି ପଣ୍ଡିତ ହୋଇଯିବ ।

ସ୍ତ୍ରୀ—ଏ କଥା କିପରି ହେବ ? କାହିଁ କି ଦେଖା ନାହିଁ

ସ୍ୱାମୀ—ମୁଁ ତ ସେହିକଥା କହୁଛି, ଯାହା କରିବ ତାର ଫଳ ପାଇବ ।

ସ୍ତ୍ରୀ—ଆମେ ମାଇପି ଲୋକ କ'ଣ ଜାଣୁ ମ ? ଯାହା ଶୁଣିଲୁଁ ତାହା କହିଲୁଁ । ଲୋକେ କହନ୍ତି—ଦିଅଁ ଯାହାକୁ ଯାହା ଦବାର ତା ଦିଅନ୍ତି ।

ସ୍ୱାମୀ—ଦିଅଁ କଣ ଦିଅନ୍ତି ? ଦିଅଁ ଜଣକୁ ରଜା କରିଛନ୍ତି କାହିଁକି ଜଣକୁ ଫକୀର କରିଛନ୍ତି କାହିଁକି ? ଦିଅଁଙ୍କର ତ ସମସ୍ତେ ସମାନ—ପାତର ଅନ୍ତର କରିବା କଣ ଦିଅଁଙ୍କର କାମ ?

ସ୍ତ୍ରୀ—ଦିଅଁ କାହିଁକି ପାତର ଅନ୍ତର କରିବେ ? ଯାହାର ଯେପରି ତପସ୍ୟା, ସେ ସେପରି ଭୋଗ କରେ ।

ସ୍ୱାମୀ—ଆଉ ପୁଣି ତପସ୍ୟାଟି କଣ ? ତପସ୍ୟା ଅର୍ଥାତ୍ ସେହି କାମ । ଯେ ଯେତେ କାମ କଲା ସେ ସେତେ ଫଳ ପାଇଲା, ତେବେ ଦିଅଁ ଆଉ ଦେଲେ କଣ ?

ସ୍ତ୍ରୀ—ତେବେ ଦିଅଁଙ୍କୁ ଏତେ ଲୋକ ଡାକ ପକାନ୍ତି କାହିଁକି ?

ସ୍ୱାମୀ—ଦିଅଙ୍କୁ କଣ ଡକା ପକାଇଲେ ସେ ଚୁଡ଼ାଏ ଅଜାଡ଼ି ଦେବେ ? ଏଥିଲାଗି କେଣି ଲୋକେ ଦିଅଁ ଦେବତାଙ୍କୁ ଡକା ପକାନ୍ତି ?

ସ୍ତ୍ରୀ—ଆଉ କଣ ?

ସ୍ୱାମୀ—ଏଠା ତମର ବଡ଼ ଭ୍ରମ । ଦିଅଁ ଆମମାନଙ୍କୁ ସୃଷ୍ଟି କରିଛନ୍ତି ବୋଲି ଆମେମାନେ ତାଙ୍କ ପୂଜା କରିବା ଆବଶ୍ୟକ । ଦିଅଁଙ୍କ ନାମ ସ୍ମରଣ କଲେ, ଭଜନ କଲେ, ଧ୍ୟାନ କଲେ ବା ଦିଅଁଙ୍କ ପୂଜା କଲେ ମନୁଷ୍ୟର ମନ ସତ୍ ମାର୍ଗରେ ଯାଏ, ମନ୍ଦ ଚିନ୍ତା ମନରେ ପ୍ରବେଶ କରେ ନାହିଁ, କାରଣ ମନ୍ଦ ଚିନ୍ତା ଦ୍ୱାରା ମନ କଲୁଷିତ ହୁଏ, ଏଥିଲାଗି ସବଦା ଆପଣା ଇଷ୍ଟଦେବତାଠାରେ ଲକ୍ଷ୍ୟ ରଖି ସବୁ କାମ କରୁଥିବ । ତେବେ ଆପଣାର ମଙ୍ଗଳ ହେବ ।

ସ୍ତ୍ରୀ—ଆମେ ଏତେ କଥା କେଉଁଠୁ ଜାଣିବୁ ?

ସ୍ୱାମୀ—ଏବେ ବୁଝିଲ ଟି ?

ସ୍ତ୍ରୀ—ହଁ, ବୁଝିଲି ।

ସ୍ୱାମୀ—ଅଳ୍ପ ଏତିକି ଥାଉ, ମୁଁ ଯାଉଛି ।

## ଚତୁର୍ଥ ପରିଚ୍ଛେଦ

ସ୍ତ୍ରୀ—କେତେ କଣ ବସି ପଢୁଛ ? ରାତି ବଢ଼ାହୋଇ ଶୁଣିଗଲଣି ତୁମ୍ଭଙ୍କର ପଢ଼ା ଶେଷ ହେବାକୁ ନାହିଁ ! କଣ ପଢୁଛ କହିଲ ?

ସ୍ୱାମୀ—କଣ ପଢୁଛି କି—ଏ ଗୋଟିଏ ପ୍ରବନ୍ଧ, 'ଉତ୍କଳ ସାହିତ୍ୟ' ମାସିକ ପତ୍ରିକାରେ ଲେଖା ଅଛି । ଏ ପ୍ରବନ୍ଧ ନାମ "ହିନ୍ଦୁ-ମାନଙ୍କର ସ୍ୱାମୀ ସ୍ତ୍ରୀ ସମ୍ବନ୍ଧ" ।

ସ୍ତ୍ରୀ—ଟିକିଏ ବଡ଼ପାଟି କରି ପଢ଼ିଲ ଶୁଣିବା ।

ସ୍ୱାମୀ—ତେବେ ପଢୁଛି ଶୁଣ ।

ସ୍ତ୍ରୀ—ତମ ପଢ଼ା ତମକୁ ଶୁଭୁଥିବ, ଆଉ ଟିକିଏ ବଡ଼ପାଟି କରି ପଢ଼ ?

ସ୍ୱାମୀ—ସେ ଘରେ ମା ଅଛନ୍ତି ଟିକି ? ବଡ଼ପାଟି କରି ପଢ଼ିଲେ ସେ ଶୁଣି ପାରିବେ । ମତେ କଣ ଟିକିଏ ଲଜ ମାଡ଼ିବ ନାହିଁ ?

ସ୍ତ୍ରୀ—ଏଥିରେ ଯେବେ ଲଜ୍ଜାର କଥା ଅଛି, ତେବେ ନ ପଢ଼ । ଆଜିକାଲି ସେପରି କେତେ ବାବୁ ପଢ଼ନ୍ତି ବୋଲି କହୁଥିଲ ପରା !

ସ୍ୱାମୀ—ହଁ, କରୁଛନ୍ତି ସତ, କିନ୍ତୁ ଆପଣାର ସାମାଜିକ ମାନ ମର୍ଯ୍ୟାଦା ତ ଅଛି । ଗୁରୁଜନମାନଙ୍କ ଆଗରେ ନମ୍ରଭାବରେ ଚଳିବା ଭଲ ।

ସ୍ତ୍ରୀ—ଅଚ୍ଛା,ବଡ଼ ପାଠ କରି ନ ପଢ଼ି କଣ ସେଥିରେ ଲେଖା ଅଛି କହ ।

ସ୍ୱାମୀ—( ପ୍ରବନ୍ଧ ପାଠ )—

ହିନ୍ଦୁମାନଙ୍କ ବିବାହସମ୍ବନ୍ଧ ଅତି ପବିତ୍ର ସମ୍ବନ୍ଧ । ବିବାହ ପରେ ପତି ପତ୍ନୀଙ୍କ ମଧ୍ୟରେ ଗୋଟିଏ ଧର୍ମ ସମ୍ବନ୍ଧ ସ୍ଥାପିତ ହୁଏ । ଏ ସମ୍ବନ୍ଧ ଛିଣ୍ଡିବାର ନୁହେଁ । ହିନ୍ଦୁ ବିବାହର ଉଦ୍ଦେଶ୍ୟ ମୁକ୍ତି, ହିନ୍ଦୁମାନଙ୍କ ପରି ପୃଥିବୀର ଅନ୍ୟ କୌଣସି ଜାତି ବିବାହର ଏପରି ପବିତ୍ର ଧର୍ମ-ସମ୍ବନ୍ଧ କଳ୍ପନା କରି ପାରି ନାହିଁ । ହିନ୍ଦୁ ମତରେ ବିବାହ ସଙ୍ଗେ ସଙ୍ଗେ ପତି ପତ୍ନୀ ଏକ ହୋଇଯାନ୍ତି । କାୟାର ଛାୟା ସହିତ ଯେପରି ସମ୍ପର୍କ, ବିବାହ ପରେ ପତି ପତ୍ନୀର ସମ୍ପର୍କ ସେହିପରି ହୋଇଯାଏ । ଜଳରେ ଜଳ, ବାୟୁରେ ବାୟୁ ମିଶିଗଲେ ଯେପରି ଜଣାଯାଏ ନାହିଁ, ବିବାହ ପରେ ପତି ପତ୍ନୀର ସେହିପରି ମିଶ୍ରଣ ହୁଏ । ସୁତରାଂ ପତ୍ନୀ ପତିର ଅର୍ଦ୍ଧାଙ୍ଗିନୀ । ପତ୍ନୀର ଅଲଗା ବ୍ୟକ୍ତିତ୍ୱ ରହେ ନାହିଁ । ହିନ୍ଦୁମାନଙ୍କ ମତରେ ପତି ପତ୍ନୀର ଚତୁର୍ବର୍ଗଦାତା, ଦେବତା, ତୀର୍ଥ, ସ୍ୱର୍ଗ ଇତ୍ୟାଦି । ପତିଭକ୍ତି ନ ଥିଲେ ପତ୍ନୀର ଅନ୍ୟ ସମସ୍ତ ଧର୍ମ ନିଷ୍ଫଳ । ସୀତା ସାବିତ୍ରୀ ପ୍ରଭୃତି ଆଦର୍ଶ ପତ୍ନୀ ଥିଲେ ବୋଲି ଆଜି ସେମାନେ ଦେବତାତୁଲ୍ୟ ପୂଜା ପାଉଛନ୍ତି । ହିନ୍ଦୁଶାସ୍ତ୍ର ପତ୍ନୀର ଗୁଣାଗୁଣ ନିର୍ଦ୍ଦେଶ କରି ଦେଇଅଛି । ଆଦର୍ଶ ରମଣୀ ଲକ୍ଷ୍ମୀ ଏବଂ ମନ୍ଦ ପ୍ରକୃତିବିଶିଷ୍ଟା ସ୍ତ୍ରୀ ଅଲକ୍ଷ୍ମୀ । ଲକ୍ଷ୍ମୀ ଓ ଅଲକ୍ଷ୍ମୀ ମଧ୍ୟରେ ପ୍ରଭେଦ କଣ କହିଲ ?

ସ୍ତ୍ରୀ—ଶାସ୍ତ୍ରରେ ଅଲକ୍ଷ୍ମୀ କଥା ଶୁଣିଥିଲି । ଯେଉଁ ସ୍ତ୍ରୀ ଆଳସ୍ୟପରାୟଣା, ଦିନ ଦିପହର ଯାଏ ଅଗାଧୁଆ ଅପାଧୁଆ ଥାଇ ଏଠି ଠିଆ ସେଠି ଠିଆ ହୋଇ ପର ନିନ୍ଦା କରି ବୁଲେ, ଗୁରୁଜନମାନଙ୍କ ଆଗରେ ହସି କଥା କହେ, ଯାହାର ଚାଲିବା ବେଳେ ପୃଥିବୀ

କଷିତ ହୁଏ, ଯେ ଆପଣା ବାପ ଘରର ବଡ଼ାଇ କରି ପତିକୁଳକୁ ନିନ୍ଦା କରେ, ଯେ ପତି ସେବାରେ ବିମୁଖ, ଯେ ପରସ୍ତ୍ରୀର ପରିଚ୍ଛନ୍ନତା ପ୍ରତି ଦୃଷ୍ଟି ଦିଏ ନାହିଁ ଯେ ସବୁବେଳେ କଳହପରାୟଣା, ଯେ ସବୁବେଳେ ଅପ୍ରିୟ କଟୁଭାଷା କହେ, ଏହିପରି ସ୍ତ୍ରୀକି ଅଲକ୍ଷ୍ମୀ କହନ୍ତି । ଯେଉଁ ସ୍ତ୍ରୀଠାରେ ଅଲକ୍ଷ୍ମୀର ଓଲଟା ଗୁଣ ଥାଏ, ସେ ଲକ୍ଷ୍ମୀ ।

ସ୍ୱାମୀ—ବେଶ୍ ବୁଝିଛ । ଆଚ୍ଛା, ମୁଁ ଯେଉଁ ବିବାହ ସମ୍ବନ୍ଧ କଥା କହିଲି କିଛି ବୁଝିଲ ?

ସ୍ତ୍ରୀ—ଭଲ ବୁଝିପାରିଲି ନାହିଁ ।

ସ୍ୱାମୀ—ବୁଝି ନ ପାରିବାର କଥା— ବିଷୟଟି ବଡ଼ କଠିନ । ଆଚ୍ଛା, ତମକୁ ସରଳ ଭାବରେ ବୁଝାଇ ଦେବି । ତମେ କହିଲ ଦେଖି ଗୃହସ୍ଥାଶ୍ରମ ଅର୍ଥ କଣ ? ଗୃହସ୍ଥ କାହାକୁ କହନ୍ତି ?

ସ୍ତ୍ରୀ—ଯାହାର ସ୍ତ୍ରୀ, ପୁତ୍ର, କନ୍ୟା, ଭାଇ, ବନ୍ଧୁ, କୁଟୁମ୍ବ ଅଛନ୍ତି ତାକୁ ଗୃହସ୍ଥ କହନ୍ତି । ସଂସାରରେ ଘର କରି ରହିବା ଅର୍ଥ ଗୃହସ୍ଥାଶ୍ରମ ।

ସ୍ୱାମୀ—ବେଶ କଥା, ଗୃହସ୍ଥାଶ୍ରମର ମୂଳ ବିବାହ । ବିବାହ ନ କଲେ ସ୍ତ୍ରୀ ପୁତ୍ର ପରିବାର ଇତ୍ୟାଦି କେଉଁଠୁ ଆସିବେ ? ଗୃହସ୍ଥର ପ୍ରଧାନ ସହାୟ ସ୍ତ୍ରୀ । ସ୍ତ୍ରୀଙ୍କ ଏହି କାରଣରୁ ସହଧର୍ମିଣୀ ଆଖ୍ୟା ଦେଇଛନ୍ତି । ସ୍ତ୍ରୀ ବ୍ୟତିରେକେ ପୁରୁଷ ଏକାକୀ ଧର୍ମ୍ମ କାର୍ଯ୍ୟ କରି ପାରିବ ନାହିଁ । ଗୃହସ୍ଥ ଧର୍ମ ବଡ଼ କଠିନ । ଏହି ଧର୍ମ୍ମ ପ୍ରତିପାଳନ କରିବା ଲାଗି ସ୍ତ୍ରୀର ସହାୟତା ଅତ୍ୟନ୍ତ ଆବଶ୍ୟକ । ସୁତରାଂ ପତି ସହିତ ପତ୍ନୀର ଧର୍ମ୍ମ-ସମ୍ବନ୍ଧ, ଏବେ ବୁଝିଲ ଟିକି ?

ସ୍ତ୍ରୀ—ହଁ, କିଛି କିଛି ବୁଝିଲି; ମାତ୍ର ଗୃହସ୍ଥର ଧର୍ମ୍ମ କଣ କହିଲ ?

ସ୍ୱାମୀ—ବିଷୟତୃଷ୍ଣା ବଡ଼ କଠିନ । ମଉଜ ସଙ୍କଳ୍ପରେ ଅପବ୍ୟୟ
କରିବା, ନାନା ପ୍ରକାର ବ୍ୟସନ ଅର୍ଥାତ୍ ପଶା, ନିଶା, ବେଶ୍ୟା
ଇତ୍ୟାଦି ବିଷୟରେ ଅନୁରକ୍ତ ହେବା, କେବଳ ଘିଅ ଦୁଧ
ଖାଇ ଅପଣା ଉଦର ପୂରଣ କରିବା, ନାନାପ୍ରକାର ସୁଖଭୋଗ
କରି ଅପଣା ଜୀବନକୁ ଚରିତାର୍ଥ କରିବା ପ୍ରଭୃତି ଗୃହସ୍ଥ
ଜୀବନର ଉଦ୍ଦେଶ୍ୟ ନୁହେଁ ।

ସ୍ତ୍ରୀ—ତେବେ ଅଉ କଣ କରିବ ?

ସ୍ୱାମୀ—ଗୃହସ୍ଥର କର୍ତ୍ତବ୍ୟ ଅନେକ । ଗୋଟି ଗୋଟି କରି ବୁଝାଇ
ବସିଲେ ଗୋଟିଏ ବଡ଼ ପୋଥି ହେବ । ତେବେ ମୋଟାମୋଟି
ଦି'କଥା କହିବା ଶୁଣ—ଅତିଥି ସେବା ଗୃହସ୍ଥର ଗୋଟିଏ
ପ୍ରଧାନ କର୍ତ୍ତବ୍ୟ । ଅପଣାର ଭାଇ, ବନ୍ଧୁ, କୁଟୁମ୍ବ, ଦାସ, ଦାସୀ,
ପାଇପଡ଼ିଶା, ଗ୍ରାମବାସୀ, ଦେଶବାସୀ ପ୍ରଭୃତି ଲୋକମାନଙ୍କ
ସୁଖ ଦୁଃଖରେ ଭାଗୀ ହେବା ଏବଂ ସେମାନଙ୍କ ପ୍ରତିପାଳନ
କରିବାରେ ଯତ୍ନବାନ ହେବା, ସମସ୍ତଙ୍କୁ ସମାନ ଚକ୍ଷୁରେ
ଦେଖିବା, କାହାରି ପ୍ରତି ରାଗ ଦ୍ୱେଷ ପ୍ରକାଶ ନ କରିବା,
ଦେବ ଦ୍ୱିଜରେ ଭକ୍ତି, ଦେବାରାଧନା, ପଞ୍ଚଯଜ୍ଞ କରିବା
ଇତ୍ୟାଦି କର୍ମ ଗୃହସ୍ଥର ପ୍ରଧାନ କର୍ତ୍ତବ୍ୟ କର୍ମ । ଗୃହସ୍ଥାଶ୍ରମରେ
ରହି ଧର୍ମକାର୍ଯ୍ୟ କରିବା ଶ୍ରେଷ୍ଠ ଧର୍ମ ବୋଲି ଭଗବାନ
କହିଛନ୍ତି ।

ସ୍ତ୍ରୀ—ଅଚ୍ଛା, ବୁଝିଲି ଗୃହସ୍ଥାଶ୍ରମ ଶ୍ରେଷ୍ଠ ଧର୍ମ । ସ୍ତ୍ରୀକି କାହିଁକି ପୁରୁଷର
ଅର୍ଦ୍ଧାଙ୍ଗିନୀ ବୋଲି କହନ୍ତି, ସେ କଥା ତ କହିଲ ନାହିଁ ?

ସ୍ୱାମୀ—ଅଚ୍ଛା ଦେଖ, ଗୃହଟି ହେଲା ଧର୍ମ ସାଧନ କରିବାର ଅଶ୍ରମ ।
ସ୍ତ୍ରୀ ପୁରୁଷ ହେଲେ ଗୃହର ମାଲିକ । ପୁରୁଷମାନେ ବାହାରର
ଯାବତୀୟ କାର୍ଯ୍ୟ କରିବେ, ଧନ ଉପାର୍ଜନ କରିବେ; ମାତ୍ର

ସ୍ତ୍ରୀ ଭିତରର ସକଳ କାର୍ଯ୍ୟ କରିବ ଏବଂ ଧନର ସଦ୍‌ବ୍ୟୟ କରି ପରିବାର ଚଳାଇବ । ହିନ୍ଦୁମାନେ କର୍ମ ବିଭାଗ କରିଦେଇ ଅଛନ୍ତି । ଆମ୍ଭମାନଙ୍କର ପ୍ରତ୍ୟେକ କାର୍ଯ୍ୟର ସେହିପରି ଧର୍ମ ସହିତ ସମ୍ପର୍କ ଅଛି । ଘରର ଭିତରେ ଯାହା ହୁଏ, ସେଥିରେ ଧର୍ମ ସମ୍ବନ୍ଧ ଅଛି, କିପରି ଅଛି ଦେଖ । ରନ୍ଧା ଭାତ କେବଳ ଗୃହସ୍ୱାମୀ ଖାଇ ହାଲୁକା ମାରିବା ଲାଗି ନୁହେଁ । ପ୍ରଥମେ ଭାତ ଇଷ୍ଟ-ଦେବତାଙ୍କୁ ସମର୍ପଣ କରାହେବ, ସେଥିରେ ଅତିଥି ଅଭ୍ୟାଗତର ଭାଗ ଅଛି, ପିତୃଲୋକମାନଙ୍କର ଭାଗ ଅଛି, ଶ୍ୱାନ ଚଣ୍ଡାଳ ବାନ୍ଧବ ପ୍ରଭୃତିଙ୍କର ମଧ୍ୟ ଅଂଶ ଅଛି । ଆମ ଶାସ୍ତ୍ର କହୁଛି, ଏ ସମସ୍ତଙ୍କୁ ନ ଦେଇ ଯେ ଅନ୍ନ ଭୋଜନ କରେ, ତାର ଅଧର୍ମ ହୁଏ । ଏହିପରି ହିନ୍ଦୁର ପ୍ରତ୍ୟେକ କାର୍ଯ୍ୟରେ ଧର୍ମ ସହିତ ସମ୍ବନ୍ଧ । ଗୃହ ଅଭ୍ୟନ୍ତରର ଯାବତୀୟ କାର୍ଯ୍ୟର ଭାର ସ୍ତ୍ରୀ ଉପରେ ନ୍ୟସ୍ତ; ସୁତରାଂ ସ୍ତ୍ରୀ ସହଧର୍ମିଣୀ ଏବଂ ଅର୍ଦ୍ଧାଙ୍ଗିନୀ । ଯାହା କଲ୍ୟାଣରେ ଗୃହର ଯାବତୀୟ ପରିବାର ଏବଂ ଅତିଥି ଅଭ୍ୟାଗତ ପ୍ରଭୃତି ଅନ୍ନ ଭୋଜନ କରନ୍ତି, ତାର କାର୍ଯ୍ୟ କି ପରମ ପବିତ୍ର ! ସୁତରାଂ ସ୍ତ୍ରୀର ଆଉ କେତେଗୁଡ଼ିଏ ନାମ ଅଛି—ଗୃହଲକ୍ଷ୍ମୀ, ଅନ୍ନପୂର୍ଣ୍ଣା, ଠାକୁରାଣୀ, ସାମନ୍ତାଣୀ ଇତ୍ୟାଦି । ସ୍ତ୍ରୀ ପୁରୁଷ ଉଭୟ ମିଳି ଧର୍ମ କାର୍ଯ୍ୟ କଲେ ଏ ସଂସାରରୁ ମୁକ୍ତିଲାଭ କରି ସ୍ୱର୍ଗବାସ ଲାଭ କରିବେ । ପୁରୁଷର ବିଳାସ ବାସନା ଚରିତାର୍ଥ କରିବାଲାଗି ସ୍ତ୍ରୀ ସୃଷ୍ଟି ହୋଇ ନାହିଁ । ସ୍ତ୍ରୀର କାର୍ଯ୍ୟ ଧର୍ମ କାର୍ଯ୍ୟରେ ସହାୟତା କରିବା । ମାତ୍ର ବର୍ତ୍ତମାନ କଳିଯୁଗରେ ଧର୍ମଭାବ କ୍ରମେ କ୍ଷୀଣ ହୋଇ ଆସୁଛି । ଆଜି-କାଲି ଗୃହକର୍ମ ଗୋଟାଏ ବାଜେ କର୍ମ ପରି ହେଲାଣି । ଆଜି-କାଲି ସ୍ତ୍ରୀମାନେ ଆଉ ଗୃହିଣୀ ହେବାକୁ ପସନ୍ଦ କରୁ ନାହାନ୍ତି ।

ଅଜ୍ଞ ସେମାନଙ୍କର ସ୍ୱଭାବୀତ ଦେଖି ସେମାନଙ୍କୁ ଗ୍ରହଣୀ କହିଲେ ଚଳେ !

ସ୍ତ୍ରୀ—ଗ୍ରହଣୀ କଣମ ?

ସ୍ୱାମୀ—ଅଗୋ, ଗ୍ରହଣୀ ବୋଲି ଗୋଟିଏ ରୋଗ ଅଛି ଜାଣ ? ଗ୍ରହଣୀ ଲୋକଙ୍କୁ ବଡ଼ ଯନ୍ତ୍ରଣା ଦିଏ । ଗ୍ରହଣୀ ରୋଗଗ୍ରସ୍ତ ଲୋକ ପୁଣି ଚଞ୍ଚଳ ମରେ ନାହିଁ, ସେ ବହୁତ ଦିନ ପଡ଼ି ଏ ଯନ୍ତ୍ରଣା ଭୋଗ କରେ ।

ସ୍ତ୍ରୀ—ମାଇପେଗୁଡ଼ାକ ରୋଗ ହେଲେ କିପରି ମ ?

ସ୍ୱାମୀ—ଅହେ, ରୋଗ ନୁହନ୍ତି କଣ ? ଯେ ଶରୀରକୁ ଯନ୍ତ୍ରଣା ଦିଏ, ତାହାହିଁ ରୋଗ ।

ସ୍ତ୍ରୀ—ମାଇପେ କଣ କଲେ କି ?

ସ୍ୱାମୀ—ଅହେ, ଯାହା ଥିଲି ଥିଲି, ଏବେ ଦି' ଦି' ଅକ୍ଷର ପଢ଼ି ମାଇପେ ରୋଗଠାରୁ ବଳିଲେଣି ।

ସ୍ତ୍ରୀ—ପାଠପଢ଼ିଲେ ଯେବେ ମାଇପେ ରୋଗ ହେଲେ, ତେବେ ସେ ଦିନ ତେମେ ମତେ ପାଠ ପଢ଼ିବାକୁ କହୁଥିଲ କାହିଁକି ?

ସ୍ୱାମୀ—ସେ ଦିନ ଯଦି ତମକୁ ବୁଝାଇ ଦେଇଥିଲି ବିଦ୍ୟାର କିଛି ଦୋଷ ନାହିଁ । ଦୋଷ ଅମ୍ଭମାନଙ୍କର ଏବଂ ଅଳ୍ପପାଠୁଆ ଲୋକଙ୍କର ।

ସ୍ତ୍ରୀ—ହଁ, ହଁ, ମନେ ଅଛି । ଜଣେ ଦି'ଜଣ କିଏ ଖରାପ ହେଲେ ବୋଲି କଣ ସମସ୍ତେ ସେହି ବାଟରେ ଗଲେ ?

ସ୍ୱାମୀ—ଯାଉ ନାହାନ୍ତି କି ? କିମେ ସଂଖ୍ୟା ବଢ଼ୁଛି । କିମେ ସ୍ତ୍ରୀମାନେ ମନେ କରୁଛନ୍ତି ଯେ, ଆପଣା ସ୍ୱାମୀଟିମାନଙ୍କୁ ଘେନି ଅନ୍ୟମାନଙ୍କଠାରୁ ପୃଥକ୍ ହୋଇଗଲେ ଭଲ । କିମେ ପରିବାର

ମଧ୍ୟରେ ଅଶାନ୍ତି କଳହ ବୃଦ୍ଧି ହେଉଛି । କ୍ରମେ ଗୃହ ଅରଣ୍ୟରେ ପରିଣତ ହେବାକୁ ବସିଲାଣି ।

ସ୍ତ୍ରୀ—ଅଚ୍ଛା ହଉହେ, ତମେ ଯାହା କହିଲ ତା ସତ ହେଲା, କିନ୍ତୁ ମୋ ମନରେ ଗୋଟିଏ ସନ୍ଦେହ ହେଉଛି ପଚାରୁଛି, କହିଲ ? ଗାଳିଦେବ ନାହିଁ ତ ?

ସ୍ୱାମୀ—ହଉ ହେ, ଗାଳି ଦେବାର ଏଥିରେ କଣ ଅଛି ? ତମ ମନରେ ଯାହା ଅଛି ପଚାର ।

ସ୍ତ୍ରୀ—ତମେ ତ ଏତେ ଟଙ୍କା ରୋଜଗାର କରୁଛ, ଆମେ ଖାଇବାକୁ ଦୁଇ ପ୍ରାଣୀ; କିନ୍ତୁ ଆଉ ଭାଇ କିଛି ରୋଜଗାର କରନ୍ତି ନାହିଁ. ତାଙ୍କର ଖାଇବାକୁ ପିଲା କୁଟୁମ୍ବ ବେଶି । ଅଚ୍ଛା, ଆମେ ଯେବେ ଭିନେ ହୋଇଯିବା, ତେବେ ତ ଆମର ବହୁତ ଟଙ୍କା ବଳିବ ? ଏହା କଲେ ଦୋଷ କଣ ?

ସ୍ୱାମୀ—ହଁ, ସେହି କଥା ଦେଖାଇ ତ ମାଇପେମାନେ ଭାଇଠାରୁ ଭାଇକି ପୃଥକ୍ କରାଇ ଦିଅନ୍ତି; କିନ୍ତୁ ମୁଁ ରୋଜଗାର କଲି ବୋଲି ମୋ ଭାଇ ବା ତା ପିଲାମାନଙ୍କୁ ଦେଲେ କଣ ପାପ ହେବ ?

ସ୍ତ୍ରୀ—ପାପ ହେବ କି ପୁଣ୍ୟ ହେବ ସେ କଥା ମୁଁ ଜାଣେ ନାହିଁ, କିନ୍ତୁ ଟଙ୍କା ତ ଆସନ୍ତା ବଳନ୍ତା ?

ସ୍ୱାମୀ—ଟଙ୍କା ବଳନ୍ତା ସତ, କିନ୍ତୁ ଟଙ୍କା କଣ ମଲାପରେ ସ୍ୱର୍ଗକୁ ନେଇଯିବ ? ଯାହାର ଭାଇ ଭାଉଜ ଭାଇପୋଝିଅ ପୁତୁରା ପ୍ରଭୃତି ଖାଇବାକୁ ନ ପାଇ ଦାଣ୍ଡରେ ସ୍ତ୍ରୀ ଦ୍ୱାରେ ତା ଦ୍ୱାରେ ଗୋଡ଼ ଭାଙ୍ଗି ଠିଆ ହେଉଥିବେ, ତା ଘରେ ଟଙ୍କା ଥାଇ କି ଲାଭ ହେବ ? ଲୋକେ କାହିଁକି ଅର୍ଥ ଉପାର୍ଜ୍ଜନ କରନ୍ତି ?

ସ୍ତ୍ରୀ—ସେ ଦିନ ଭାଗବତରେ ଶୁଣିଥିଲି—

ଧନ ଅର୍ଜିଲେ ଧର୍ମ୍ମ କର
ଧର୍ମ୍ମେ ପ୍ରାପତ ନରହର ।

ସ୍ୱାମୀ—କଥାଟି ତ ଠିକ୍, କିନ୍ତୁ ଧର୍ମ୍ମ କଣ ଜାଣ ?

ସ୍ତ୍ରୀ—ଦିଅଁ ଦେବତା ପୂଜା କଲେ କହନ୍ତି ଧର୍ମ୍ମ ହେବ । ଗୋଷୀ ଭୋଗୀଙ୍କି ଖାଇବାକୁ ଦେଲେ ଧର୍ମ୍ମ ହେବ ।

ସ୍ୱାମୀ—ବେଶ୍ ତ ବୁଝିଛ ଦେଖୁଛି । ଦରିଦ୍ରକୁ ଦାନ ଦେଲେ ଧର୍ମ୍ମ ହୁଏ, ଯାହାର ଖାଇବାକୁ ନାହିଁ ତାକୁ ଖାଦ୍ୟ ଦେବାହିଁ ମନୁଷ୍ୟର ଧର୍ମ୍ମକାର୍ଯ୍ୟ; ଅନ୍ନଦାନଠାରୁ ବଳି ଦାନ ନାହିଁ । ଯେ ମୁଠିଏ ପେଟ ପୁରାଇ ଖାଇପାଏ ତା ମନରେ ଯେ ସନ୍ତୋଷ ହୁଏ, ହଜାରେ ଟଙ୍କା ହାତରେ ଧରିଲେ ମଧ୍ୟ ସେ ସନ୍ତୋଷ ହୁଏ ନାହିଁ । ଅନ୍ନମୟ ବ୍ରହ୍ମ ଅନଦ୍ୱାରା ସନ୍ତୁଷ୍ଟ ହୁଅନ୍ତି । ଆମ ହାତରେ ପଇସା ଅଛି ଆଉ ଆମ ଭାଇ ବନ୍ଧୁ ଯେବେ ଅନ୍ନ କଷ୍ଟରେ ପୀଡ଼ିତ ହେଲେ, ତେବେ ଆମ ପଇସାରେ କି କାର୍ଯ୍ୟ ? ଏକାଘର ମଧ୍ୟରେ ଜଣେ ପୂର୍ଣ୍ଣ ଭୋଜନ କରି ଢେକୁ ମାରୁଥିବ, ଆଉ ଜଣେ ଅନ୍ନକଷ୍ଟରେ ହାହାକାର କରୁଥିବ, ଏକଥା ଦେଖିଲେ କି ବରଦାସ୍ତ ହୋଇ ପାରିବ ?

ସ୍ତ୍ରୀ—ଅତିଥି ଅଭ୍ୟାଗତକୁ ଦେଲେ ଧର୍ମ୍ମ ହେବ ସିନା, ଏମାନଙ୍କୁ ଦେଇ କି ଧର୍ମ୍ମ ହେବ ?

ସ୍ୱାମୀ—ଆହେ, ଅତିଥି ଅଭ୍ୟାଗତ ହେଉ ବା ଆପଣା ଭାଇ କୁଟୁମ୍ବ ହୋଇଥାନ୍ତୁ ସମସ୍ତେ ତ ମନୁଷ୍ୟ; ସମସ୍ତଙ୍କ ହୃଦୟରେ ଏକ ବ୍ରହ୍ମ ଅଛନ୍ତି, ସେମାନଙ୍କ ମଧ୍ୟରେ କିଛି ଭିନ୍ନାଭିନ୍ନ ନାହିଁ । ଦରିଦ୍ରତା ଯେ କୌଣସି ମନୁଷ୍ୟଠାରେ ଥିଲେ ତାହାର ପ୍ରତିକାର ବାଞ୍ଛନୀୟ, ସେ ଅମ୍ଭମାନଙ୍କ ସହାନୁଭୂତିର ପାତ୍ର, ତାକୁ ଦୟା କଲେ ଧର୍ମ୍ମ ହେବ ।

ସ୍ତ୍ରୀ—ଏପରି ଦାନୀ ହେଲେ ରାଜ୍ୟ ଲୋକେ ଆସି ଜମା ହେବେ, କାହାକୁ କେତେ ଦେଇ ପାରିବ ?

ସ୍ୱାମୀ—ହଇରେ, ତମେ କଣ ବୁଝିଲ ଯେ, ମୁଁ ଦୁନିଆରେ ଯେତେ ଦରିଦ୍ରଲୋକ ଅଛନ୍ତି, ସମସ୍ତଙ୍କୁ ଡାକିଆଣି ଦାନ ଦେବି ? ଏ କଥା ଅତି ଅସମ୍ଭବ । ଈଶ୍ୱର ମତେ ସେପରି ଶକ୍ତି ଦେଇ ନାହାନ୍ତି । ତେବେ ଆମ ଆମ୍ଭକୁ ଗୃହୀ ଅସେ ଯେତେ ଜଣଙ୍କୁ ଦେଇ ପାରିବୁଁ, ତାହା ହେଲେ ହେଲା । ପ୍ରତ୍ୟେକ ଗୃହସ୍ଥର ଏହାହିଁ କର୍ତ୍ତବ୍ୟ ଏବଂ ଏହାହିଁ ଶ୍ରେଷ୍ଠ ଧର୍ମ । ପ୍ରତ୍ୟେକ ଲୋକର ଯେବେ ଏହାହିଁ କର୍ତ୍ତବ୍ୟ, ତେବେ ଆପଣା ଭାଇବନ୍ଧୁଙ୍କୁ ପାଖରୁ ତଡ଼ି ଦେବାଟା ଭଲ କି ?

ଯେ ଆପଣା ଭାଇକି ସ୍ନେହ କରିବାକୁ ଶିଖି ନାହିଁ, ଯେ ଆପଣା ଭାଇର ଅନ୍ନକଷ୍ଟ ଦୂର କରିବାକୁ ଶିଖି ନାହିଁ, ଯେ ଆପଣାର ଭାଇପ୍ରତି ସହାନୁଭୂତି କରିବାକୁ ଶିଖି ନାହିଁ, ଯେ ଆପଣା ଭାଇକି ବୈରୀ ବୋଲି ମନେ କରେ, ସେ ଅଉ ଅପର ନିଃସମ୍ପର୍କୀୟ ଲୋକ ପ୍ରତି କି ଦୟା ମାୟା ମମତା ଦେଖାଇବ ?

ସ୍ତ୍ରୀ—ଏପରି ତ ଅନେକ ଲୋକ କରିବାର ଦେଖାଯାଏ । ଆପଣା ଭାଇ ଖାଇବାକୁ ପାଉ ନାହିଁ ସତ, କିନ୍ତୁ ବାହାର ଲୋକଙ୍କୁ ବେଶ୍ ଦାନ ଦିଏ !

ସ୍ୱାମୀ—ଯେବେ ସେପରି କେହି କରୁଥାଏ, ତେବେ ସେ କେବଳ ଲୋକମାନଙ୍କୁ ଦେଖାଇ ନାମ କରିବା ଉଦ୍ଦେଶ୍ୟରେ । ଯେ ପ୍ରକୃତ ଦୟାଶୀଳ ବ୍ୟକ୍ତି ତାର ପରାପର ଭେଦଜ୍ଞାନ ନ ଥାଏ, ଆପଣା ଲୋକ ହେଉ ବା ପରଲୋକ ହେଉ ଯେଉଁଠି ଦରିଦ୍ରତା ଦେଖାଯାଏ, ଦୟା ସେଠାରେ ଯାଇ ଉପସ୍ଥିତ ହୁଏ । ଦୟାର ଭେଦାଭେଦ ଜ୍ଞାନ ନାହିଁ; ପରାପର ବିଚାର ନାହିଁ । କଥାରେ

ଅଛୁ—ଘରୁ ସମସ୍ତ ବିଷୟ ଶିକ୍ଷା କରାଯାଏ ଏବଂ ଦାନ ଶିକ୍ଷା ମଧ୍ୟ ଗୃହରେ ଆରମ୍ଭ ହୁଏ ।

ସ୍ତ୍ରୀ—ତେବେ ଭାଇକେ ହାଣ୍ଡିଏ ବୋଲି ଲୋକେ କାହିଁକି କହନ୍ତି ?

ସ୍ୱାମୀ—ଭାଇକେ ହାଣ୍ଡିଏ କଳିଯୁଗର କଥା, ତାହା ପ୍ରକୃତ ଧର୍ମ ନୁହେ । ଆଜି କଳିକାଳ ଲୋକେ କେବଳ ରାଗ, ଅହଂକାର ଦ୍ୱେଷ ଖୋଜି ବୁଲୁଛନ୍ତି । କଥା କଥାକେ ରାଗ ଅହଂକାର ଦେଖାଯାଏ । ଆପଣା ସୋଦରମାନଙ୍କଠାରେ ଯାହାଙ୍କର ପ୍ରୀତି ନାହିଁ, ସେମାନେ ଅନ୍ୟମାନଙ୍କ ସହିତ ପ୍ରୀତି କରି ଏକତ୍ର ମିଳିମିଶି କିପରି କେଉଁ କାର୍ଯ୍ୟ କରିବେ ? ଏହି ଭେଦବୁଦ୍ଧି ଜାତ ହେବାରୁ ତ ଆମ୍ଭମାନଙ୍କର ଏପରି ଦୁର୍ଦ୍ଦଶା ! ଆଉ ପୂର୍ବ ଭ୍ରାତୃପ୍ରେମ କାହିଁ ?

ସ୍ତ୍ରୀ—ପୂର୍ବେ ଆଉ ଅଧିକ କଣ ଥିଲା ମ ?

ସ୍ୱାମୀ—ଆହେ, ରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ କିପରି ଥିଲେ ଶୁଣିଛ ଟିକି ? ରାମଚନ୍ଦ୍ର ବନବାସ ଗଲେ ବୋଲି ଲକ୍ଷ୍ମଣ ଚଉଦ ବର୍ଷ କାଳ ଆପଣା ସୁଖରେ ଜଳାଞ୍ଜଳି ଦେଇ ଫଳମୂଳ ଖାଇ, ନାନା ଆପଦ ବିପଦ ଭୋଗ କରି ରାମଚନ୍ଦ୍ରଙ୍କ ସାଥିରେ ରହିଲେ । ରାଜପୁତ୍ର ରାଜ୍ୟସୁଖ ତ୍ୟାଗ କରି ଜଟା ବଳ୍କଳ ପିନ୍ଧି ରାମଚନ୍ଦ୍ରଙ୍କ ସହଗାମୀ ହୋଇଲେ । ଭରତ ରାମଚନ୍ଦ୍ରଙ୍କ ପାଦୁକା ଥୋଇ ରାଜ୍ୟ ଶାସନ କଲେ, ମାତ୍ର ସିଂହାସନରେ ବସିବାକୁ ସୁଖକର ମନେ କଲେ ନାହିଁ । ଭରତ ରାଜା ହେବେ ବୋଲି ରାମଚନ୍ଦ୍ରଙ୍କୁ ବନବାସ ଆଜ୍ଞା ଦିଆଗଲା ସତ, ମାତ୍ର ଭରତ ସିଂହାସନରେ ବସିଲେ ନାହିଁ । କାହିଁକି ? ଭାଇଠାରେ ଭାଇର ଗାଢ଼ ସ୍ନେହ ଓ ଭକ୍ତି ଯୋଗୁଁ । ଗୋଟାଏ ଭାଇ ଯେବେ ବନବାସୀ ହୋଇ କଷ୍ଟ ଭୋଗ କଲା, ତେବେ ସେ କଷ୍ଟ ସବୁ ଭାଇଙ୍କର ।

ଗୋଟାଏ ଭାଇ ଦୁଃଖ ପାଇଲା, ଆଉ ଗୋଟାଏ ସୁଖରେ ରହିବ ? ଏ କଥା କଦାପି ହୋଇ ନ ପାରେ । ଭାଇ ସୁଖରେ ସୁଖୀ ହେବା ଏବଂ ଭାଇ ଦୁଃଖରେ ଦୁଃଖୀ ହେବାହିଁ ପ୍ରକୃତ ଭ୍ରାତୃଧର୍ମ । ଏ ଆମ ଦେଶର କଥା; ମାତ୍ର ଆଜି ଏ ଆଦର୍ଶ ଆମମାନଙ୍କୁ ସ୍ୱପ୍ନ ପରି ଲାଗୁଛି ! ଆଜି ତମେ କହିଲ କଣ ନା ଭାଇକେ ହାଣ୍ଡିଏ ! ରାମଚନ୍ଦ୍ର ଅଯୋଧ୍ୟାର ରାଜା ହେଲେ, ମାତ୍ର ଭାଇଠାରୁ ଭିନ୍ନ ହୋଇ ନ ହେଲେ । ସୀତା ଲକ୍ଷ୍ମଣ ପ୍ରଭୃତିଙ୍କୁ ଆପଣାର ପୁତ୍ର ବୋଲି ମନେ କରୁଥିଲେ । କେବେ ସେ ସ୍ୱପ୍ନରେ ଭାବି ନ ଥିଲେ ଯେ, ତାଙ୍କ ସ୍ୱାମୀ ରାଜା ହେଲେ ଆଉ ଭାଇଗୁଡ଼ିଙ୍କର ପୃଥକ ହେବା ଭଲ । ଏ ଭାବ ଆଜି ଭାରତରେ ପ୍ରତି ଗୃହରେ ଦେଖା ଦେଲାଣି ସତ, କିନ୍ତୁ ଆଗେ ତ ରାମ ଲକ୍ଷ୍ମଣ ପରି ଭାଇ ଥିଲେ ! ଯେଉଁଠି ଏକା ମା ପେଟରୁ ଜନ୍ମିଥିବା ଭାଇମାନଙ୍କ ମଧ୍ୟରେ ସ୍ନେହ ପ୍ରୀତି ନାହିଁ, ସେଠାରେ ଆପଣା ଗ୍ରାମ ଭାଇ, ଜାତି ଭାଇ, ଦେଶ ଭାଇମାନଙ୍କ ମଧ୍ୟରେ କପରି ଭ୍ରାତୃପ୍ରେମ ହେବ ?

ସ୍ତ୍ରୀ—ସେଥିଲାଗି ଆଜିକାଲି ସଭାସମିତରେ ଭାଇ ଭାଇ ଡକା ପକାଉଛ କି ?

ସ୍ୱାମୀ—ନ ହେବ କଣ ? ଭାଇ କଥାଟା ଲୋକେ କମେ ପାଶୋରି ପକାଉଛନ୍ତି । ଏବେ ମଫସଲିଆ ଲୋକେ କହନ୍ତି, "ଭଗାରି କାହିଁ, ନା ମା ପେଟରେ ।" ଅର୍ଥାତ୍ ଏବକାଳକୁ ଭାଇ ହେଲାଣି ଶତ୍ରୁ ।

ମା ପେଟରୁ ଜନ୍ମ, ଏକା ଲହୁ ହାଡ଼ଖଣ୍ଡ, ସେ ଯେବେ ହେଲା ଆମର ଶତ୍ରୁ, ଆଉ ଏ ସଂସାରରେ ଆମର ମିତ୍ର ହେବ କିଏ— କହିଲ ଦେଖି ? ଶୁଣିଛ ଗୋଟାଏ ପୁରୁଣା କଥା ଅଛି—

"ଭଲ କରିବାକୁ ମନ କଲେ ସଙ୍ଗେ ଥିବ ଭାଇ" ଅର୍ଥାତ୍ ଆପଦ ବିପଦ ବେଳକୁ ଭାଇ ପ୍ରଧାନ ସହାୟ । ଲକ୍ଷ୍ମଣ ସାଥିରେ ନ ଥିଲେ ରାମଚନ୍ଦ୍ର କଣ ସହଜରେ ଲଙ୍କା ଜୟ କରିଥାନ୍ତେ ?

ସ୍ତ୍ରୀ—ନୁହେଁ କେଣି, କଥାଟି ମନକୁ ଆସୁଛି, ତେବେ ଆଜିକାଲି ଏପରି କାହିଁକି ହେଉଛି ?

ସ୍ୱାମୀ—ଆପଣମାନଙ୍କ ସଦୁପଦେଶରୁ ! କଥା ଅଛି ପରା—"ସ୍ତ୍ରୀ ବୁଦ୍ଧି ପ୍ରଳୟଙ୍କରୀ" । ଦଶରଥ ମହାରାଜା ସେହି ରମଣୀବଶ ହୋଇ ହିତାହିତ ଜ୍ଞାନଶୂନ୍ୟ ହେଲେ ଏବଂ ପୁଅକୁ ବନବାସ ଦେଲେ ! ଆଜିକାଲି ମଧ୍ୟ ଯେଉଁ ସୁପୁରୁଷଗୁଡ଼ିକ କଳହ-କୋକିଳା-ମାନଙ୍କ ମନ୍ତ୍ରଣା ଶୁଣନ୍ତି, ସେମାନଙ୍କ ଘର ସେହିପରି ଛାରଖାର ହୋଇଯାଏ । ଏଣୁ ଭାରତରେ ଘରକୁ ପାଞ୍ଚଘର, ସକାଳକୁ ଦେଖି ପବିତ୍ର ସ୍ୱର୍ଗୀୟ ଭ୍ରାତୃପ୍ରେମର ନାମଗନ୍ଧ ନ ରହେ !

ସ୍ତ୍ରୀ—ସବୁ ଦୋଷ କଣ ମାଇପଙ୍କର ? ମାଇପେ ଅଧୁରି କହିଲେ, ମିଣିପେ ତାଙ୍କ କଥା ନ ଶୁଣିଲେ ହେଲା !

ସ୍ୱାମୀ—ମିଣିପେ ନ ଶୁଣିଲେ ତ ଆଉ କିଛି ଅପଦ ନ ଥିଲା, କିନ୍ତୁ ଯେଉଁ ପୁରୁଷମାନେ ଦୁର୍ବଳମନା, ସେମାନେ ମାଇପଙ୍କର ବଶୀଭୂତ ହୋଇ ପଡ଼ନ୍ତି ଏବଂ ସ୍ତ୍ରୀମାନଙ୍କର ବଚନର ହୋଇ କାର୍ଯ୍ୟ କରନ୍ତି । ଯେଉଁମାନେ ଦୃଢ଼ମନା, ସେମାନେ ଅବଶ୍ୟ ଜିତିଯାନ୍ତି । ସେମାନେ ଆପଣା ବିବେକ ଅନୁସାରେ ପ୍ରତ୍ୟେକ କାର୍ଯ୍ୟର ଭାବୀ ଫଳାଫଳ ପ୍ରତି ଲକ୍ଷ୍ୟ ରଖି କାର୍ଯ୍ୟ କରନ୍ତି ।

ସ୍ତ୍ରୀ—ତେବେ ପୁରୁଷମାନଙ୍କର ଦୋଷ ନାହିଁ, କିପରି ?

ସ୍ୱାମୀ—ଦୁର୍ବଳମନା ପୁରୁଷମାନେ ଅବଶ୍ୟ ଦୋଷୀ । ସ୍ତ୍ରୀ ଯେତେ-ବେଳେ ଜାଣିପାରେ ଯେ ପୁରୁଷ ତାର ଅୟତ୍ତାଧୀନ, ତେତେ-

ବେଳେ ସେ ଆପଣା ସ୍ୱାର୍ଥ ସିଦ୍ଧି କରିବା ଉଦ୍ଦେଶ୍ୟରେ ପୁରୁଷକୁ କୁମନ୍ତ୍ରଣା ଦେଇ କୁପଥରେ ପରିଚାଳିତ କରାଇ ଦିଏ । ଏଇଟା କଣ ସ୍ତ୍ରୀ ପକ୍ଷରେ ଉଚିତ ?

ସ୍ତ୍ରୀ—ପୁରୁଷ ହେଲା ଘରର ମୁରବି; ପାପପୁଣ୍ୟ ତା ମୁଣ୍ଡରେ, ସେ ବିଗୁଡ଼ କଲା ନାହିଁ କାହିଁକି ?

ସ୍ୱାମୀ—ଆଚ୍ଛା ମାନିଲି, ପୁରୁଷ ଘରର ମୁରବି, ପାପପୁଣ୍ୟ ତା ମୁଣ୍ଡରେ, ଏଥିଲାଗି କଣ ସ୍ତ୍ରୀ ତାଙ୍କୁ ମନ୍ଦ ଉପଦେଶ ଦେବ ? ସ୍ତ୍ରୀ ପୁରୁଷର ସହଧର୍ମିଣୀ କାହିଁକି ? ପୁରୁଷ କଣରେ ଧର୍ମ ମଧ୍ୟରେ ନିହ ଧର୍ମକାର୍ଯ୍ୟ କରିବ, ସେଥିଲାଗି ସ୍ତ୍ରୀର ସାହାଯ୍ୟ ଅବଶ୍ୟକ । ସ୍ତ୍ରୀଠାରୁ ପୁରୁଷର ଅଧିକ ଆତ୍ମୀୟ ଅନ୍ୟ କେହି ନାହିଁ, ଏ କଥା ତ ଜାଣ ?

ସ୍ତ୍ରୀ—ଏ କଥା କିଏ ନ ଜାଣେ ଯେ ମୁଁ ଜାଣେ ନାହିଁ ?

ସ୍ୱାମୀ—ସେ କଥା ଯେବେ ଜାଣ ଏବେ ପଚାରୁଛି କହିଲ ଦେଖି—ଜଣେ ଲୋକ ଆସି ତମ ସ୍ୱାମୀଙ୍କୁ ଯେବେ ତମ ଆଗରେ ମାଡ଼ ମାରିବ, ତେବେ ତମେ ସହିବ ଠିକ ?

ସ୍ତ୍ରୀ—ଏ କଥା କିପରି ମୁଁ ସହିବି ମ ? ମୋ ଆଗରେ ମୋ ସ୍ୱାମୀର ଇଜ୍ଜତ ଯିବ, ଏ କଥା ମୋ ଆଖି ଦେଖିବ ମୋ ଦେହ ସହିବ ?

ସ୍ୱାମୀ—କାହିଁକି ?

ସ୍ତ୍ରୀ—କାହିଁକି କଣ ମ ? ମୋ ମନ କଣ, ଆଉ ମୋ ସ୍ୱାମୀ ମନ କଣ ? ତାଙ୍କୁ ଯେଉଁ କଥାଟାରେ ନିନ୍ଦା ହେବ ସେଥିରେ କଣ ମୋର ନିନ୍ଦା ହେବ ନାହିଁ ?

ସ୍ୱାମୀ—ଅବଶ୍ୟ ଯାହା କହିଲ ଠିକ । ତେବେ ସ୍ୱାମୀ ଯେତେବେଳେ ସ୍ତ୍ରୀର ଅଦୂର ଦୋଷ ହିତାହିତ ଜ୍ଞାନ ଭୁଲି ଯାଇ ଲୋକ-

ଅସୁନ୍ଦର କାର୍ଯ୍ୟ କରେ, ତେତେବେଳେ ଲୋକେ ତାକୁ ମାଇପି-ବୋଲା ବୋଲି ନିନ୍ଦା କରନ୍ତି କି ନାହିଁ ?

ସ୍ତ୍ରୀ—ଏତେବେଳକୁ ବୁଝିଲି । ଲୋକେ ମାଇପି-ବୋଲା ବୋଲି ଇହି ନିନ୍ଦା କରନ୍ତି, ପଛରେ ତାର ବଗୁର ଧର ବସନ୍ତି, ନାନାପ୍ରକାର କୁତ୍ସା ରଚନା କରନ୍ତି, ପଛରେ ହାତତାଳି ଦିଅନ୍ତି । ମୁଁ ତ କେତେ ଲୋକଙ୍କ ନାମରେ ଶୁଣିଛି ।

ସ୍ୱାମୀ—ସ୍ୱାମୀଙ୍କି ସ୍ତ୍ରୀ ଯେବେ ଭଲ ପରାମର୍ଶ ଦେଉଥାନ୍ତି, ତେବେ ପ୍ରକୃତ ଏ ଲାଞ୍ଛନା ସହନ୍ତି ନାହିଁ । ସ୍ତ୍ରୀ ଆପେ ପରାମର୍ଶ ଦେଇ ଥିବାରୁ ତେତେବେଳେ ମନ୍ଦ ହୋଇ ଅନ୍ୟ ନ୍ୟ ନିନ୍ଦାପର ଏ ନିନ୍ଦାଟାକୁ ମଧ୍ୟ ବୁଝିପାରେ ନାହିଁ ସତ; କିନ୍ତୁ ସ୍ତ୍ରୀ ଯେବେ ଅନ୍ୟ ପ୍ରକାର ନିନ୍ଦା ଶୁଣିଲା ଭଳି ପର ମନେ କରୁଥାନ୍ତି, ସେ କେବେ କୁମନ୍ତ୍ରଣା ଦିଅନ୍ତି ନାହିଁ ସ୍ୱାମୀର ଧର୍ମ ନଷ୍ଟ କରନ୍ତି ନାହିଁ—ସେ ପ୍ରକୃତ ସହଧର୍ମିଣୀର କାର୍ଯ୍ୟ କରନ୍ତି ! ସ୍ତ୍ରୀ ଲାଗି ପତି ଅଧର୍ମ କାର୍ଯ୍ୟ କଲେ ସ୍ତ୍ରୀ ସେ ଦୋଷ ଲାଗି ଦାୟୀ । ଏ ପ୍ରକାର ସ୍ତ୍ରୀକୁ ସତୀ ବୋଲି କୁହାଯାଇ ନ ପାରେ । ସତୀ ସ୍ତ୍ରୀମାନେ ପତିଙ୍କୁ କେବେ ଅସତ୍ ପରାମର୍ଶ ଦିଅନ୍ତି ନାହିଁ ଏବଂ ଦେଲେ ଏ ଜନ୍ମ ଓ ପରଜନ୍ମରେ ଦୁଃଖଭାଗିନୀ ହୁଅନ୍ତି ଏବଂ ନରକରେ ପତିତ ହୁଅନ୍ତି ।

ସ୍ତ୍ରୀ—ଏଥିରେ ଅସତୀ ହେଲା କିଆଁ ମ ?

ସ୍ୱାମୀ—ଆହେ, ତମେ ମନେ କରୁଛ, ଯେଉଁ ସ୍ତ୍ରୀ ଆପଣା ପତି ବ୍ୟତୀତ ଅନ୍ୟ ପତି ସଂସର୍ଗ କରେ, ସେହି କେବଳ ଅସତୀ—ନା ?

ସ୍ତ୍ରୀ—ମୁଁ ତ ସେହି କଥା ଜାଣେ

ସ୍ୱାମୀ—ସେ ତ ଗୋଟିଏ କଥା—ସେ କଥାରେ ତ ଆଉ ବୁଝିବାକୁ ନାହିଁ । ମାତ୍ର ସତୀ ଆଦର୍ଶ ନାରୀ । କୌଣସି ପ୍ରକାର ଦୋଷ ସ୍ତ୍ରୀଠାରେ ଦେଖାଗଲେ ତାକୁ ସତୀ ବୋଲି କୁହାଯିବ ନାହିଁ ।

ସ୍ତ୍ରୀ—ଆଉ କି କି କାର୍ଯ୍ୟ କଲେ ସ୍ତ୍ରୀମାନଙ୍କୁ ଅସତୀ କୁହାଯିବ ?

ସ୍ୱାମୀ—ଉପରେ ତମକୁ ଅଲକ୍ଷ୍ମୀ କଥା କହିଛି, ଶୁଣିଛ । ଅଲକ୍ଷ୍ମୀର ଯେତେ ଗୁଡ଼ିଏ କାର୍ଯ୍ୟ, ସମସ୍ତ ଅସତୀର ଲକ୍ଷଣ । ସତୀ ଦେବୀ, ଅସତୀ ରାକ୍ଷସୀ । ଯେଉଁମାନେ ଆପଣା ଧର୍ମପତିକି ଅସତ୍ ପରାମର୍ଶ ଦିଅନ୍ତି, ସେମାନଙ୍କୁ ରାକ୍ଷସୀ କୁହାଯାଏ । ସେ ପ୍ରକାର ସ୍ତ୍ରୀମାନେ ପୁରୁଷମାନଙ୍କର ଅମଙ୍ଗଳ ବ୍ୟତୀତ ଆଉ କିଛି କରନ୍ତି ନାହିଁ । ବୁଝିଲ ଟିକି ?

ସ୍ତ୍ରୀ—ବେଶ ବୁଝିଲି, ମାତ୍ର ଏପରି ଶିକ୍ଷା ପାଇଲେ ସିନା ହୁଅନ୍ତା ?

ସ୍ୱାମୀ—ଆହେ ଆଗେ ରାମାୟଣ ମହାଭାରତରୁ ଗଳ୍ପ ଶୁଣି ଅନେକ କଥା ଶିଖୁଥିଲେ । ଏବେ ତ ସ୍କୁଲମାନଙ୍କରେ ଆଉ ସେପରି ଶିକ୍ଷା ଦିଆଯାଉ ନାହିଁ, ସେମାନେ ଶିଖିବେ କିପରି ? ଆଜିକାଲି କି ପୁରୁଷ, କି ସ୍ତ୍ରୀ ଯେ ଦିଅକ୍ଷର ପଢ଼ିଲା ତା ମୁହଁ ହେଲା ଉପରକୁ । ସେ ମନେ କଲା ଯେ ସେ ଜଣେ ଭାରି ପଣ୍ଡିତ; ମାତ୍ର ଫଳରେ "ନିର୍ଗନ୍ଧାଇବ କିଂଶୁକାଃ ।" ସତ୍‌ଚରିତ୍ର ଅମୂଲ୍ୟ ଧନ, ସବଦା ଚରିତ୍ର ପ୍ରତି ଦୃଷ୍ଟି ରଖିବା ଆବଶ୍ୟକ । ଏହି ଲକ୍ଷ୍ୟ ରଖି ସ୍ତ୍ରୀମାନେ ଆପଣା ଚରିତ୍ର ଗଢ଼ିବେ ଏବଂ ଆପଣା ପୁଅ ଝିଅମାନଙ୍କୁ ସେହିପରି ଶିକ୍ଷା ଦେବେ ।

ସ୍ତ୍ରୀ—ଯାହା କହିଲ ସତ । ସ୍ତ୍ରୀମାନଙ୍କୁ ଏପରି ଉପଦେଶ ଦେଲେ ଅଳ୍ପ ଦିନରେ ବହୁତ କାର୍ଯ୍ୟ ହେବ ।

ସ୍ୱାମୀ—ବାସ୍ତବିକ କଥା, ଜଣେ ବୁଝିଲେ ସେ ଆଉ ପାଞ୍ଚ ଜଣଙ୍କୁ ବୁଝାଇ ଦେବ । ଆଜି ଏତିକି, ମୁଁ ଯାଉଛି ।

# ପଞ୍ଚମ ପରିଚ୍ଛେଦ

ସ୍ବାମୀ—କି ଗୋ, ଆଜି ଦୁଇ ପ୍ରହର ବେଳେ କି ସଭା ବସିଥିଲା କି ?

ସ୍ତ୍ରୀ—ସଭା କଣ ବସିଥିଲା ମ ? ସାଇରୁ ପାଞ୍ଚମାଇପେ ଆସିଲାରୁ ପାଞ୍ଚକଥା ପଡ଼ିଥିଲା, ଆମେ କଣ ମରଦ ହୋଇଛୁ ଯେ ସଭା କରିବୁ ?

ସ୍ବାମୀ—ପାଞ୍ଚ ଜଣ ବସି ପାଞ୍ଚ କଥା ପଡ଼ିଲେ ତ ସଭା ହେଲା—ମରଦ ହେଲେ କଣ ହେଉଛି, ମାଇପେ ହେଲେ କଣ ହେଉଛି ?

ସ୍ତ୍ରୀ—ଆମେ ଜାଣୁ ଯେ ମିଶିପେଯାକ ବସି ସଭା କରନ୍ତି । ଏଥର ପରା ବାଲେଶ୍ବରରେ କଣ ଗୋଟାଏ ସଭା କରୁଥିଲ ?

ସ୍ବାମୀ—ହଁ, ବାଲେଶ୍ବରରେ ଏଥର ଓଡ଼ିଆମାନଙ୍କର ଗୋଟାଏ ସଭା ହୋଇଥିଲା, ମୁଁ ପରା ସେଠାକୁ ଯାଇଥିଲି ।

ସ୍ତ୍ରୀ—ତମର ତ ଆଉ କିଛି କାମ ନ ଥାଏ, ଖାଲି କଥା କହି ଏଆଡ଼େ ସେଆଡ଼େ ଯାଅ । କଣ ସଭା ହେଲା କହିଲ ?

ସ୍ବାମୀ—ଅଛା, ଆମ ସଭାକଥା ପଛେ କହିବା, ଆଜି ତମ ସଭାରେ କି କଥା ପଡ଼ିଥିଲା କହିଲ ?

ସ୍ତ୍ରୀ—ଆମର କଣ ସଭା ବସିଥିଲା ? ପାଞ୍ଚ ମାଇପେ ଏକାଠି ହେଲାରୁ ଘର ଦୁଃଖ ସୁଖ କଥା ପଡ଼ିଲା । ସେ ସମାମା ବୋହୂ କଥା କୁହା କୋହି ହେଉଥିଲେ । ଆହେ, ସେ ବୋହୂଟା ଆଉ ଶାଶୁ ଶଶୁରଙ୍କୁ ମାନିବାକୁ ନାହିଁ । ତାର ଲାଜ ସରମ ନାହିଁ । ଗୋଟାଏ ଧାଡ଼େଇଟାଏ ସେ ।

ସ୍ବାମୀ—ବେଶ୍ କଥା, ପଞ୍ଚାଏ ମାଇପେ ଯେଉଁଠି ଏକାଠି ହେଲେ ସେଠି କେବଳ ପରଚର୍ଚ୍ଚାରେ ପରନିନ୍ଦା କରି ବସିଗଲେ । କିଏ ଧାଡ଼େଇ, କିଏ କଳିହୁଣ୍ଡେଇ, କିଏ ନିଲଜୀ, କିଏ ସୁନ୍ଦରୀ,

କିଏ ଅସୁନ୍ଦର, କିଏ ତାହା ଶାଶୁଙ୍କୁ ମାନୁଛି, ନାହିଁ, ତାହା ଗେରସ୍ତ ତାହାଙ୍କୁ ଦେଖି ପାରନ୍ତି ନାହିଁ, କିଏ ହାଣ୍ଡିରେ ଖାଇଲା, କିଏ ହସିଲା, କିଏ ଛୁଇଁଲା, କିଏ ବୋହୂକୁ ଦେଖି-ପାରିଲା ନାହିଁ, କିଏ ସାହିପଡ଼ିଶାଙ୍କ ସାଥିରେ ଭଲ ଭଲ, କି ଗୁଲଗଲେ ଭୁଲି ତମେ ଇତ୍ୟାଦି ହେଲା ମାତ୍ରପି ଏବା ଅଲୋଚ୍ୟ ବିଷୟ । ଜଣେ ମାଇକିନିଆ ଯେବେ ଗୋଟାଏ କଥା ଶୁଣିଲା ସେଇଠାରେ ସେ କଥାକୁ ନେଇ ସେ, ଘାଟଘାଟ ଜଗାଇବ, ସାତଘରେ ଭଲ ଲଗିବ ।

ସ୍ତ୍ରୀ—ତମେ ଏତେ କଥା କେଉଁଠି ଜାଣ ପାରୁ ଶୁଣୁଥାଅ ମ କାମଧନ୍ଦା ସାରି ଦାଣ୍ଡ ପିଣ୍ଡାରେ ପାଞ୍ଚଜଣ ଏକାଠି ବସିଲେ ପାଞ୍ଚକଥା ପଡ଼ନ୍ତି । ଏଥିରେ ଗୋଟାଏ କଥା କହିଲେ ପୁଣି ଦୋଷ ?

ସ୍ୱାମୀ—ଅହେ, ପାଞ୍ଚଜଣ ଏକାଠି ବସି କଥାବାର୍ତ୍ତା ହେବାକୁ କେ ମନା ଅଛି ? ସେ ତ ଭଲ କଥା; ତେବେ କାହାକୁ ଏହିପରିକି ପରନିନ୍ଦା କରିବାଟା ଭଲ ନୁହେଁ ।

ସ୍ତ୍ରୀ—ସତକଥା କହିବାକୋହି ହେଲେ ପରନିନ୍ଦା ହେଲା କିପରି, ମ ?

ସ୍ୱାମୀ—ଅହେ, ଗୋଟିଏ କଥା ଅଛି ଜାଣ ? କ୍ରୋଧୀ ଲୋକ ଭଳ, ଅନ୍ୟ । କଥା ଜଣ କି, ଗୋ ତମ୍ବା ମ ଭିକ୍ଷୁନିଆ ଯାଇ ଆରମ୍ଭ ଗୋଡମ୍ବ ବୋଲି ଗାଳି ଦଅନ୍ତି କିନ୍ତୁ ଅପଣା, ଗୋଡ଼ରେ ଗୋଦର ସେ କଥା ଅଲ ଦେଖନ୍ତି ନାହିଁ । ସେହିପରି ଯେ ପାଞ୍ଚଜଣ ବସି ପରର ଦୋଷ ଦେଖୁଥାନ୍ତି, ସେମାନଙ୍କ ନ ଠାରେ କେଉଁ ଦୋଷ ଅଛି ବୋଲି ଦେଖିପାରନ୍ତି ନାହିଁ । ତେ ପାଞ୍ଚଜଣ ବସି ଯେପରି ସ୍ୱାମୀମାନଙ୍କ ଦୋଷ ଦେଖ... ଛାଡ଼ି ରଖିଥିଲ, ସେ ସେହିପରି ଅଲ ପାଞ୍ଚଜଣଙ୍କୁ ...

ତମମାନଙ୍କ ନିନ୍ଦା କରୁଥିବ । ଏଥିରେ କାହାର କି ଲାଭ ହେଉଛି କହିଲ ?

ସ୍ତ୍ରୀ—ଲାଭ ଏଥିରେ କଣ ଅଛି ମ ? ପାଞ୍ଚଜଣ ବସି ତ କଥାବାର୍ତ୍ତା ହେଲେ ଆଉ ଲାଭ କଣ କରନ୍ତେ ?

ସ୍ୱାମୀ—କଣ ଲାଭ କରନ୍ତେ ? କରିଜାଣିଲେ ଅନେକ ଲାଭ ହୁଅନ୍ତା । ସେ ଆଡ଼କୁ କେଉଁ କାହାର ନଜର ଅଛି ? ଖାଲି ବସି ପରନିନ୍ଦା କରି ଆପଣା ପାଟି ଗଲି, ମାଇପ ଘରକୁ ଗଲେ ଲାଭ କଣ ହେବ ?

ସ୍ତ୍ରୀ—କିଣ କଲେ ଲାଭ ହେବ କହିଲ ? ପାଞ୍ଚ ମାଇପେ ବସି କଣ ଟଙ୍କା ଅର୍ଜନ କରିବେ ?

ସ୍ୱାମୀ—ଲାଭ କଣ ଖାଲି ଟଙ୍କାରେ ହୁଏ ?

ସ୍ତ୍ରୀ—ଟଙ୍କାଲାଭ କଥା ତ ମୁଁ ଜାଣେ ଆଉ ପୁଣି କଣ ଲାଭ ଅଛି ମ ?

ସ୍ୱାମୀ—ମାଇପେ ବସୁଥିଲେ କଣ ଟଙ୍କା ଲାଭ କରି ପାରନ୍ତେ ନାହିଁ ?—ତା' ବି କରି ପାରନ୍ତେ ଏବେ ଆଉ ଅନେକ ପ୍ରକାର ଲାଭ ବି କରି ପାରନ୍ତେ ।

ସ୍ତ୍ରୀ—ଆମେ କଣ କରିବୁ, ତେବେ କହିଦିଅ ; କାଲିଠାରୁ ସେହି କଥା କରିବା ।

ସ୍ୱାମୀ—ତେବେ କହୁଛି ଶୁଣ । ପାଞ୍ଚଜଣ ଏକାଠି ବସି କୌଣସି ଗୋଟିଏ ପୁରାଣ ପଢ଼ିଲେ ସେଥିରୁ ପାଞ୍ଚଟା ଭଲ ଉପଦେଶ କାନରେ ପଡ଼ିବ । ଖଣ୍ଡେ ଖବର କାଗଜ ପଢ଼ିଲେ ସେଥିର ପାଞ୍ଚଟା ଭଲ କଥା ଶୁଣି ପାରିବ । ଖଣ୍ଡେ ଭଲ ବହି ପଢ଼ିଲେ ପାଞ୍ଚଟା ଭଲ କଥା ଶିଖିପାରିବ । ଭଲ କଥା ଶୁଣିଲେ ମନ ଭଲ ବାଟରେ ଯାଏ, ମନ୍ଦ କଥା ଶୁଣିଲେ ମନ୍ଦ ବାଟରେ ଯାଏ । ସାଧୁସଙ୍ଗ କରିବାକୁ ଶାସ୍ତ୍ର କାହିଁକି ଉପଦେଶ ଦିଏ ?

ପରନିନ୍ଦା, ପରଅପବାଦ, ପରଛିଦ୍ର ଚର୍ଚ୍ଚା କଲେ ନିଜ ସ୍ୱଭାବଟା ଖରାପ ହୋଇଯାଏ । ଯାହାର ଯାହା ଗୁଣ ଅଛି ସେ କଥା ଚର୍ଚ୍ଚା କରିବା ଭଲ, ଦୋଷ ଖୋଜିବା ଭଲ ନୁହେଁ । ବରଂ ଯାହାର ଯେଉଁ ଦୋଷ ଥିବ, ସେ ଗୁଡ଼ିକ ତାର ଯେପରି ସଂଶୋଧନ ହେବ, ସେଥିଲାଗି ତାଙ୍କୁ ପାଖ୍‌ଟା ଭଲ ଉପଦେଶ ଦେବା ଉଚିତ । ସେଥିରେ ତାର ଉପକାର ହେବ, ଆପଣାର ବି ଉପକାର ହେବ । ଦୋଷ ଚର୍ଚ୍ଚାଦ୍ୱାରା କାହାର କିଛି ହାନି ନାହିଁ, ବରଂ ଆପଣାର ହାନି ।

ଆଉ ଗୋଟିଏ କଥା ଶୁଣ, ଆଗେ ଅନେକ ବୟସ୍କା ସ୍ତ୍ରୀମାନେ ଘର ପାଇଟି ସାରି ମୁଠିଏ ଖାଇ ଯିବାବେଳେ ଅରଟ ଖଣ୍ଡିଏ ଧେନି ସୂତା କାଟୁଥିଲେ, ବରଣା ବଳୁଥିଲେ, କପା ଗଛରେ କପା ଖୁଆଇ ତୁଳା କରୁଥିଲେ, ପଇତା କାଟୁଥିଲେ, ନଖ ବଳିତା ବଳୁଥିଲେ, ଏହିପରି ତ ଗୁଡ଼ିଏ କାମ କରି ଦି ପଇସା ଲାଭ କରୁଥିଲେ ।

ଅହିଅ ମାଇପେଟୋକ କାନ୍ଥରେ ଚିତ୍ର ଲେଖିବା, କାଣ୍ଡିଆଲ ପ୍ରଭୃତି ବୁଣିବା ଇତ୍ୟାଦି ଦ୍ୱାରା କାରିଗରି ଶିଖୁଥିଲେ । ପାଞ୍ଚ ମାଇପେ ବସି ପୁରାଣପଣ୍ଡାଠାରୁ ପୁରାଣ ଶୁଣୁଥିଲେ ।

ଏବେ ଏ କଥା ସବୁ କ୍ରମେ ଲୋପ ହୋଇ ଆସୁଅଛି । ଏବେ ପାଞ୍ଚଜଣ ବସିଲେ ତ ପର ଘରର ଧର ବସିଲେ ।

ସ୍ତ୍ରୀ—ଖାଲି ମାଇପେ ପରନିନ୍ଦା କରନ୍ତି, ଆଉ ତେମେମାନେ ବସି କାହାରି କଥା ପକାଅ ନାହିଁ ?

ସ୍ୱାମୀ—ପରନିନ୍ଦା କରିବା କଥାଟି ତ ମନ୍ଦ, ପୁରୁଷ ହୁଅନ୍ତୁ ବା ମାଇପେ ହୁଅନ୍ତୁ ସେଥିରେ କିଛି ପ୍ରଭେଦ ନାହିଁ । କେହିଛି କଣ କି ଆଉ, ମଣିଷ ତ ଦେବତା ନୁହେଁ, ସମସ୍ତଙ୍କର କିଛି ନା

କିଛି ଦୋଷ ଥାଇପାରେ, କାହାର ବା ଗୁଣ ଥିବ କାହାର ବା ଅଧିକ ଥିବ ।

ମନ୍ଦ କଥାର ଚର୍ଚ୍ଚା କରିବା, ପର ଦୋଷ କଥା ଆଲୋଚନା କରିବା ଲାଗି ଧର୍ମଶାସ୍ତ୍ର ମନା କରିଛି । ପର ଗୁଣର ପ୍ରଶଂସା କର, ମନ ଓ ଦୋଷ ପ୍ରତି ଦୃଷ୍ଟି ଦିଅ ନାହିଁ । ପରଠାରେ ଯେଉଁ ଭଲ ଗୁଣ ଅଛି ତାକୁ ଅନୁକରଣ କର, ତଦ୍ଵାରା ଆପଣାର ମଙ୍ଗଳ ହେବ । ଯେଉଁ ମାଇକିନିଆଠାରେ ଦୋଷ ଅଛି ତାକୁ ଡାକି ବସାଇ ଭଲ ଉପଦେଶ ଦିଅ । ଦିନେ ଦି' ଦିନ ପାଞ୍ଚ ଦିନ ଦଶ ଦିନ ଭଲ ଉପଦେଶ ଶୁଣିଲେ ନିଶ୍ଚୟ ତାର ମନ ବଦଳି ଯାଇପାରେ ।

ଆପଣା ଆପଣା ପିଲାଛୁଆଙ୍କୁ କିପରି ଭଲ ପାଠ ପଢ଼ିବେ ସେମାନଙ୍କ ଚରିତ୍ର କିପରି ଭଲ ହେବ, ସେମାନେ କିପରି ଭଲ ଶିକ୍ଷିତ ହେବେ, ଏହି ବିଷୟ ଚର୍ଚ୍ଚା କଲେ ବହୁତ ଉପକାର ହେବ । ପିଲାମାନଙ୍କୁ ବସାଇ ସେମାନଙ୍କୁ ଯେବେ ଭଲ ଉପଦେଶ ଦିଅନ୍ତେ, ସେମାନଙ୍କ ଚରିତ୍ର ଉତ୍ତମ ହୁଅନ୍ତା । ଅତି ପିଲାଦିନୁ କାନରେ ଭଲ କଥା ପଡ଼ିଲେ ପିଲାଠାରୁ ବଡ଼ ଦିନକୁ ଆଉ ଖରାପ ସ୍ଵଭାବ ହେବନାହିଁ ।

ସ୍ତ୍ରୀ—ଯାହା କହିଲ ଠିକ୍; ଆଚ୍ଛା, ମୁଁ କାଲିଠାରୁ ଏପରି କରିବାକୁ ଚେଷ୍ଟା କରିବି । ଯେଉଁ ସ୍ତ୍ରୀମାନେ ଆମ ଘରକୁ ଆସିବେ, ତାଙ୍କୁ କହୁ କାଲିଠାରୁ ତୁମ କଥା ଅନୁସାରେ କାମ କରିବି । ଆଚ୍ଛା, ତେବେ ତମ ଏସବୁ ଉପଦେଶ କାହିଁକି କହିଲ ନାହିଁ । ବାହାଘରବେଳେ ଏଥର କି ସଭା ହୋଇଥିଲା ମ ?

ସ୍ଵାମୀ—'ଉତ୍କଳ ସମ୍ମିଳନୀ ।"

ସ୍ତ୍ରୀ—ସେ ପୁଣି କେଉଁଠାରେ ବସିଥିଲା ମ ?

କିଛି ଦୋଷ ଥାଇପାରେ, କାହାର ବା ଊଣା ଥିବ କାହାର
ବା ଅଧିକ ଥିବ ।

ମନ୍ଦ କଥାର ଚର୍ଚ୍ଚା କରିବା, ପର ଦୋଷ କଥା ଆଲୋଚନା
କରିବା ଲାଗି ଧର୍ମଶାସ୍ତ୍ର ମନା କରିଛି । ପର ଗୁଣର ପ୍ରଶଂସା
କର, ମାତ୍ର ତା ଦୋଷ ପ୍ରତି ଦୃଷ୍ଟି ଦିଅ ନାହିଁ । ପରଠାରେ
ଯେଉଁ ଭଲ ଗୁଣ ଥିବ ତାକୁ ଅନୁକରଣ କର, ତଦ୍ଦ୍ୱାରା
ଆପଣାର ମଙ୍ଗଳ ହେବ । ଯେଉଁ ମାଇକିନାଠାରେ ଦୋଷ
ଅଛି ତାକୁ ତାହା ବୁଝାଇ ଭଲ ଉପଦେଶ ଦିଅ । ହୁଏତ
ଦି' ଦିନ ପାଞ୍ଚ ଦିନ ଦଶଦିନ ଭଲ ଉପଦେଶ ଶୁଣିଲେ ନିଶ୍ଚୟ
ତାର ମନ ବଦଳି ଯାଇପାରେ ।

ଆପଣା ଆପଣା ପିଲାପିଲିଗୁଡ଼ାକ କିପରି ଭଲ ପାଠ ପଢ଼ିବେ
ସେମାନଙ୍କ ଜୀବନ କିପରି ଭଲ ହେବ, ସେମାନେ କିପରି
ଭଲ ଶିକ୍ଷିତ ହେବେ, ଏ ବିଷୟ ଚର୍ଚ୍ଚା କଲେ ବହୁତ
ଉପକାର ହେବ । ପିଲାମାନଙ୍କୁ ବୁଝାଇ ସେମାନଙ୍କ ଯେବେ
ଭଲ ଉପଦେଶ ଦିଅନ୍ତେ, ସେମାନଙ୍କ ଚରିତ୍ର ଉତ୍ତମ ହୁଅନ୍ତା ।
ଅତି ପିଲାଦିନୁ କାନରେ ଭଲ କଥା ପଡ଼ିଲେ ପିଲାଠାରେ ବଡ଼
ଦିନକୁ ଆଉ ଖରାପ ସ୍ୱଭାବ ହେବନାହିଁ ।

ସ୍ତ୍ରୀ—ଯାହା କହିଲ ସବୁ ଠିକ୍, ଆଜି, ମୁଁ କାଲିଠାରୁ ଏପରି କରିବାକୁ
ଚେଷ୍ଟା କରିବି । ଆଉ ଯେଉଁମାନେ ଆମ ଘରକୁ ଆସିବେ, ତାଙ୍କୁ
ବି କାଲିଠାରୁ ତମ କଥା ଅନୁସାରେ କାମ କରିବି । ଆଚ୍ଛା,
ତେବେ ତମ ସଭା କଥା କହିଲ ନାହିଁ । ସଭାରେ ସେ
ଏଥର କି ସଭା ହେଉଥିଲା ମ?

ସ୍ୱାମୀ—'ଉତ୍କଳ ସମ୍ମିଳନୀ ।"

ସ୍ତ୍ରୀ—ସେ ପୁଣି କେଉଁଠାରେ ହେଲା ମ?

ସ୍ୱାମୀ—ଅହେ, ସେ ସଭାର ନାମ "ଉତ୍କଳ ସମ୍ମିଳନୀ"। ଓଡ଼ିଶାର ସବୁ ସ୍ଥାନର ଓଡ଼ିଆମାନେ ବସି ଆପଣା ଆପଣା ଦୁଃଖ ସୁଖ ସେହିଠି ସଭାରେ ବିଚାର କରନ୍ତି, ସେହି ସଭାର ନାମ "ଉତ୍କଳ ସମ୍ମିଳନୀ।"

ସ୍ତ୍ରୀ—ଉତ୍କଳ ସମ୍ମିଳନୀ ନ କହି 'ଓଡ଼ିଆ ମେଳା' କହିଲେ ତ ସମସ୍ତେ ବୁଝି ପାରନ୍ତେ ?

ସ୍ୱାମୀ—କାହିଁକି ?

ସ୍ତ୍ରୀ—ମେଳା କଥା ତ ଆମ ଦେଶରେ ନୂଆ ନୁହେଁ, "ଉତ୍କଳ ସମ୍ମିଳନୀ" କହିଲେ ଗୋଟାଏ ନୂଆ ନାଁ ପରି ଜଣା ପଡ଼ୁଛି। ଆଗେ ଆମ ଦେଶରେ ପାଠକ ଜାତିମାନଙ୍କର ମେଳା ଥିଲା। ସେ ମେଳା କେତେକେ ଥରେ ହେଉଥିଲା। ମୁଁ ଶୁଣିଛି ପରା, ନିଶ୍ରେଣୀ, ଜାଗର ପ୍ରଭୃତି ଯାତ୍ରାରେ ଭଣ୍ଡାରୀ ପ୍ରଭୃତି ଜାତିମାନଙ୍କର ମେଳା ବସିଥାଏ। ଆମ ଗାଁ ଭଣ୍ଡାରୀ ଆସି ଆମ ଘରୁ ଧାନ ପଇସା ମାଗି ନିଏ। ସେ ମେଳାରେ ଜାତିର ହାର ଗୁହାରି ପଡ଼େ, କ୍ଷିଆ ପିଆ କରନ୍ତି, ନାନା ଦୁଃଖ ସୁଖ କଥା ପଡ଼େ। ତମ ମେଳାରେ କଣ ହୁଏ କହିଲ ?

ସ୍ୱାମୀ—ସେ ଛିନ୍ନା ଗୋଟିଏ ପାଠକ ଜାତିର ଲୋକେ ମେଳା କରନ୍ତି, ଆମ ମେଳାରେ ସବୁ ଜାତିର ଲୋକେ ମେଳା କରନ୍ତି, ଆମ ମେଳାରେ ସବୁ ଜାତିର ଲୋକେ ଏକାଠି ହୁଅନ୍ତି। ଯେତେ ପ୍ରକାର ଓଡ଼ିଆ ଅଛନ୍ତି, ସମସ୍ତେ ସେ ମେଳାକୁ ଯାଇ ପାରନ୍ତି। ଓଡ଼ିଆ ଅର୍ଥ କୌଣସି ଗୋଟିଏ ପାଠକ ଜାତିକୁ ବୁଝାଏ ନାହିଁ। ଓଡ଼ିଆ ଅର୍ଥ ଓଡ଼ିଶାରେ ବାସ କରୁଥିବା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ପ୍ରଭୃତି ଜାତ ବର୍ଣ୍ଣର ଲୋକ। ଏ ସମସ୍ତେ ମିଳି ଓଡ଼ିଆ ଜାତି ବୋଲାନ୍ତି।

ସ୍ୱାମୀ—ଅହେ, ସେ ସଭାର ନାମ "ଉତ୍କଳ ସମ୍ମିଳନୀ"। ଓଡ଼ିଶାର ସବୁ ସ୍ଥାନର ଓଡ଼ିଆମାନେ ବସି ଅପଣା ଅପଣା ଦୁଃଖ ସୁଖ କେଉଁ ଭାବରେ ବିଚାର କରନ୍ତି, ସେହି ସଭାର ନାମ "ଉତ୍କଳ ସମ୍ମିଳନୀ।"

ସ୍ତ୍ରୀ—ଉତ୍କଳ ସମ୍ମିଳନୀ ନ କହି 'ଓଡ଼ିଆ ମେଳା' କହିଲେ କି ସମସ୍ତେ ବୁଝି ପାରନ୍ତେ ?

ସ୍ୱାମୀ—କାହିଁକି ?

ସ୍ତ୍ରୀ—ମେଳା କଥା ତ ଆମ ଦେଶରେ ନୂଆ ନୁହେଁ, "ଉତ୍କଳ ସମ୍ମିଳନୀ" କହିଲେ ଗୋଟାଏ ନୂଆ ନାଁ ପରି ଜଣା ପଡୁଛି। ଆଗେ ଆମ ଦେଶରେ ପାଠକ ଜାତିମାନଙ୍କର ମେଳା ଥିଲା। ସେ ମେଳା କେତେ ଥରେ ହେଉଥିଲା। ମୁଁ ଶୁଣିଛି ପରା, ତ୍ରିବେଣୀ, ସାଗର ପ୍ରଭୃତି ଯାତ୍ରାରେ ଭଣ୍ଡାରୀ ପ୍ରଭୃତି ଜାତିମାନଙ୍କର ମେଳା ବସିଥାଏ। ଆମ ଗାଁ ଭଣ୍ଡାରୀ ଆସି ଆମ ଘରୁ ଧାନ୍ୟ ପଇସା ମାଗି ନିଏ। ସେ ମେଳାରେ ଜାତିର ହାର ଖୁହାରି ପଡ଼େ, ଖିଆ ପିଆ କରନ୍ତି, ନାନା ଦୁଃଖ ସୁଖ କଥା ପଡ଼େ। ତମ ମେଳାରେ କଣ ହୁଏ କହିଲ ?

ସ୍ୱାମୀ—ସେ ମେଳା ଗୋଟିଏ ପାଠକ ଜାତିର ଲୋକେ ମେଳା କରନ୍ତି, ଆମ ମେଳାରେ ସବୁ ଜାତିର ଲୋକେ ମେଳ କରନ୍ତି, ଆମ ମେଳାରେ ସବୁ ଜାତିର ଲୋକେ ଏକାଠି ହୁଅନ୍ତି। ଯେତେ ପ୍ରକାର ଓଡ଼ିଆ ଅଛନ୍ତି, ସମସ୍ତେ ସେ ମେଳାକୁ ଯାଇ ପାରନ୍ତି। ଓଡ଼ିଆ ଅର୍ଥ କୌଣସି ଗୋଟିଏ ପାଠକ ଜାତିକୁ ବୁଝାଏ ନାହିଁ। ଓଡ଼ିଆ ଅର୍ଥ ଓଡ଼ିଶାରେ ବାସ କରୁଥିବା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ପ୍ରଭୃତି ଅନ୍ୟ ବର୍ଣ୍ଣର ଲୋକ। ଏ ସମସ୍ତେ ମିଳି ଓଡ଼ିଆ ଜାତି ବୋଲାନ୍ତି।

ସ୍ତ୍ରୀ—ଅଚ୍ଛା, ସେ କଥା ବୁଝିଲି, ସେ ମେଳାରେ କଣ କଥା ପଡ଼େ ?

ସ୍ୱାମୀ—ଓଡ଼ିଆମାନେ କପଡ଼ା ପାଠ ପଢ଼ିବେ, ବାଣିଜ୍ୟ ବ୍ୟବସାୟ କରି ଧନୀ ହେବେ, ଏହିପରି ନାନା କଥା ଆଲୋଚନା କରାଯାଏ । କହିପାରିବା ଲୋକେ ଠିଆ ହୋଇ ବକ୍ତୃତା ଦିଅନ୍ତି । ସରକାରଙ୍କ ନିକଟରେ ଆମ ଦାବୀ କପରି ପହଞ୍ଚିବ; ସେ କଥା ମଧ୍ୟ ବିଚାର କରନ୍ତି ।

ସ୍ତ୍ରୀ—ତେବେ ପଞ୍ଚାଏ ବସି ଖାଲି ବକ୍ତୃତା ଦେଲେ କଣ ଦେଶରେ ପାଠ ମାଡ଼ିଯିବ, ଦେଶ ଲୋକେ ଧନୀ ହୋଇଯିବେ ?

ସ୍ୱାମୀ—ଅତେ ନାହିଁ ହେ, ଖାଲି ବକ୍ତୃତା ଶୁଣିଲେ କଣ ସବୁ କାମ ମନାକୁ ହୋଇଯିବ ? ଲୋକେ ପାଞ୍ଚ କଥା ଶୁଣିଲେ ସେମାନଙ୍କ ମନ ସେ ଆଡ଼େକୁ ଗୋଡ଼ାଇବ । ମନ ହେଲେ ଲୋକ ସବୁ କରିପାରେ ।

ସ୍ତ୍ରୀ—ଯାହା କହିଲ ମାନିଲି, ସେ କଥା ସତ; କିନ୍ତୁ ଯେ ଯାହା ଗ୍ରାମରେ ଲୋକମାନଙ୍କୁ କହିଦେଲେ ହୁଅନ୍ତା ନାହିଁ ? ଏତେ ପଇସା ଖର୍ଚ୍ଚ କରି ଏତେ ଦୂର ଦେଶକୁ ଯିବ କିଆଁ ?

ସ୍ୱାମୀ—କଣ କଣ କରି ବୁଝାଇବାକୁ କେତେ ସମୟ ଲାଗିବ ! ଏପରି ଅନେକ ଲୋକ ଏକାଠି ଥିବେ, ଜଣେ କହିଲା, ଅନେକ ଶୁଣିଲେ, ଅଳ୍ପ ସମୟରେ ବେଶୀ କାମ ହେବ । ଯେଉଁମାନେ ସେ ମେଳାକୁ ଯାଇ ଶୁଣି ଆସିଲେ ସେମାନେ ତାଙ୍କ ଆଇପଡ଼ଶା ଲୋକମାନଙ୍କୁ ବୁଝାଇ ଦେବେ । ନହେଲେ ଗୋଟା ଦେଶଯାକ ପ୍ରଚାରିତ ହେବ, ନୁହେଁ ?

ସ୍ତ୍ରୀ—ହଁ, ହଁ, ମାଇପେ ଶୁଣି କଣ କରିବେ ମ ?

ସ୍ୱାମୀ—ମାଇପେ ଶୁଣିଲେ ବହୁତ କାମ ହେବ ।

ସ୍ତ୍ରୀ—ମାଇପେ ଯାଇ ମେଳାରେ ବକ୍ତୃତା ଦେବେ ?

ସ୍ୱାମୀ—ଅହେ, ବକ୍ତୃତା ନ କଲେ ଅଉ କିଛି କଥା କରି ପାରିବେ ନାହିଁ ? ଆପଣା ଆପଣା ପିଲାଝିଲାମାନଙ୍କୁ ଲୋକକଥା ବୁଝାଇ ଦେଲେ ତ ବେଶି କାମ ହେବ ।

ସ୍ତ୍ରୀ—ହଁ, ସେ କଥା କରିପାରୁଁ ।

ସ୍ୱାମୀ—ସେ କଥା କରିପାରିଲେ ତ ବହୁତ କାମ ହେବ । ସ୍ତ୍ରୀ ପୁରୁଷ ଉଭୟଙ୍କୁ ନେଇକରି ସିନା ସଂସାର । ବହୁ କଥା ଉଭୟ ସ୍ତ୍ରୀ ପୁରୁଷ ବୁଝିବା ଆବଶ୍ୟକ । କିଏ ଯାଇ ଦାଣ୍ଡରେ କାମ କରିବ, କିଏ ବା ଘର ଭିତରେ ବସି କାମ କରିବ । ଦୁହେଁ ଟଣ୍ଟା ନ ଭିଡ଼ିଲେ କଣ ସଂସାର ଚଳିବ ?

ସ୍ତ୍ରୀ—ସେ କଥା ସତ ।

ସ୍ୱାମୀ—ଅଚ୍ଛା, ଆଜି ଏତିକି ଥାଉ, ମୁଁ ଯାଉଛି ।

---

## ଷଷ୍ଠ ପରିଚ୍ଛେଦ

ସ୍ୱାମୀ—କି ଗୋ, ଆଜି ଜଗନ୍ନାଥଙ୍କର ଭୋଗ ପରି ଛପନ ଥଳିଟି ଭୋଗ ବଢ଼ା ହୋଇଛି କିଅଁ ?

ସ୍ତ୍ରୀ—ହେଲା କଣ ? ତେମେ ପରା ଆମ ଜଗନ୍ନାଥ, ତମପାଇଁ ବଢ଼ା ହେବ ନାହିଁ ତ ଆଉ କାହାପାଇଁ ହେବ ?

ସ୍ୱାମୀ—ତେବେ ହେଲା ଯେ, ଆମର ଆଜି ଆଉ ଭୋଜନ ହେଉ ନାହିଁ ।

ସ୍ତ୍ରୀ—କାହିଁକି ମୁଁ କଣ କହିଲି କି ?

ସ୍ୱାମୀ—ତମେ ଯାହା କହୁଛ ଠିକ୍ କହୁଛ । ଆମେ ତ ହେଲୁ ତମର ଜଗନ୍ନାଥ, ମାତ୍ର ଜଗନ୍ନାଥ ତ ବାସନାଭୋଗୀ, ସୁତରାଂ ମୁଁ ବି ବାସନା ପାଇଲି, ଯାଉଛି ।

ସ୍ତ୍ରୀ—ଆମ ଜଗନ୍ନାଥ ବାଇନାଭୋଗୀ ନୁହନ୍ତି, ସେ ତ ହାଣ୍ଡି ଭାଙ୍ଗି ଖାନ୍ତି !

ସ୍ୱାମୀ—ଅଚ୍ଛା, ସେ କଥା ଥାଉ, ଏତେ ଅୟୋଜନ କାହିଁକି କହିଲ ? ଆଜି କଣ କି ?

ସ୍ତ୍ରୀ—ଅଭ କିଛି ନୁହେ, ତେମେ କେତେ କାଳରେ ପ୍ରବାସରୁ ଅସିଛ ବୋଲି ଭୋଗ ପରି ହୋଇଛି ।

ସ୍ୱାମୀ—ଅଉ କଣ ଛଅଙ୍କ ଖାଇବେ ନାହିଁ ?

ସ୍ତ୍ରୀ—[illegible] କିଏ କିପରି ଗଣ୍ଡାଏ ଗଣ୍ଡାଏ ଖାଇବେ ନା, ଆମସ୍ତଙ୍କ ପାଇଁ କେଉଁଠୁ ଏତେ ଅସିବ ? ଗୁକରବାକର ତ ଖାଇବେ ନାହିଁ, ସେମାନେ ପଖାଳ ଖାଇବେ ।

ସ୍ୱାମୀ—ଗୁକରଗୁଡ଼ାକ କଣ ମଣିଷ ନୁହନ୍ତି ? ସେମାନଙ୍କର କଣ ଖାଇବାକୁ ମନ ନ ଥିବ ?

ସ୍ତ୍ରୀ—ଅଗୋ, ମନ କାହିଁକି ନ ଥାନ୍ତା ଯେ ? ଖାଇବାକୁ କାହାର ମନ ନ ଥାଏ ? ଗୋଟାଏ ଗୁକରକୁ ତ ଏତିକିଯାକ ସବୁ ଦେଲେ ନଅଣ୍ଟ ହେବ ।

ସ୍ୱାମୀ—ତେବେ ସେମାନଙ୍କୁ ଦେବ ନାହିଁ କାହିଁକି ?

ସ୍ତ୍ରୀ—ମଲ, ସେଗୁଡ଼ାକୁ ଛ ତୁଣ ନ ଭଜା କରି କିଏ କାହା ଘରେ ଖାଇବାକୁ ଦେଉଛି ? ପଖାଳ ଭାତ କଂସାଏ, ଲୁଣ ମୁଠାଏ ହେଲେ ସେମାନେ ସୁ-ସା କରି ମାରିଦେବେ । ସେମାନେ କଣ ପର ଘରେ ପଶି ମଙ୍ଗଳବାର ଓଷା କରିବେ କି ?

ସ୍ୱାମୀ—ଦେଖ, ତୁମର ଏପରି କଥା ଶୁଣି ମତେ ବଡ଼ [illegible] ଲାଗୁଛି, ଖାଇବା ପିଇବା କଥାରେ ଭିନ୍ନାଭିନ୍ନ କଲେ [illegible] ହୁଏ । ଦେଖ, ଗୁକରମାନେ ତ ଆମ ପରି ମଣିଷ । [illegible] ମଣିଷ ଘୃଣା କରିବା ଭଲ ନୁହେ ।

ସ୍ତ୍ରୀ—ଆମ ଜଗନ୍ନାଥ ବାଇନାଭୋଗୀ ନୁହନ୍ତି, ସେ ତ ହାଣ୍ଡି ବାଢ଼ି ଖାଆନ୍ତି !

ସ୍ୱାମୀ—ଅଚ୍ଛା, ସେ କଥା ଥାଉ, ଏତେ ଅୟୋଜନ କାହିଁକି କରିଛ ? ଆଜି କଣ କି ?

ସ୍ତ୍ରୀ—ଆଜି କିଛି ନୁହେଁ, ତୁମେ କେତେ କାଳକେ ପ୍ରବାସରୁ ଆସିଛ ବୋଲି ଏସବୁ ସିଦ୍ଧ ହୋଇଛି ।

ସ୍ୱାମୀ—ଆଉ କିଏ କେହି ଖାଇବେ ନାହିଁ ?

ସ୍ତ୍ରୀ—ଖାଇଲେ କିଏ କିପରି ଗଣ୍ଡାଏ ଗଣ୍ଡାଏ ଖାଇବେ ନା, ସମସ୍ତଙ୍କ ପାଇଁ କେଉଁଠୁ ଏତେ ଆସିବ ? ଚାକରବାକର ତ ଖାଇବେ ନାହିଁ, ସେମାନେ ପଖାଳ ଖାଇବେ ।

ସ୍ୱାମୀ—ଚାକରଗୁଡ଼ାକ କଣ ମଣିଷ ନୁହନ୍ତି ? ସେମାନଙ୍କର କଣ ଖାଇବାକୁ ମନ ନ ଥିବ ?

ସ୍ତ୍ରୀ—ଆହୋ, ମନ କାହିଁକି ନ ଥାଉ ମ ? ଖାଇବାକୁ କାହାର ମନ ନ ଥାଏ ? ଗୋଟାଏ ଚାକରକୁ ତ ଏତେ ଜିନିଷ ଦେଲେ ନାଅଣ୍ଟ ହେବ ।

ସ୍ୱାମୀ—ତେବେ ସେମାନଙ୍କୁ ଦେବ ନାହିଁ କାହିଁକି ?

ସ୍ତ୍ରୀ—ମଲ, ସେଗୁଡ଼ାକୁ ଛ ତୁଣ ନ ଜଳା କର କିଏ ତାହା ଘିଅରେ ଖାଇବାକୁ ଦେଉଛି ? ପଖାଳ ଭାତ କଂସାଏ, ଲଙ୍କା ମୁଠାଏ ହେଲେ ସେମାନେ ସୁ-ଧା କରି ମାରିଦେବେ । ସେମାନେ କଣ ପର ଘରେ ପଶି ମଙ୍ଗଳବାର ଓଷା କରିବେ କି ?

ସ୍ୱାମୀ—ଦେଖ, ତୁମର ଏପରି କଥା ଶୁଣି ମତେ ବଡ଼ ଦୁଃଖ ଲାଗୁଛି, ଖାଇବା ପିଇବା କଥାରେ ଭିନ୍ନାଭିନ୍ନ କଲେ କିଛି ଅଧର୍ମ ହୁଏ । ଦେଖ, ଚାକରମାନେ ତ ଆମ ପରି ମଣିଷ । ମଣିଷକୁ ମଣିଷ ଘୃଣା କରିବା ଭଲ ନୁହେଁ ।

ସ୍ତ୍ରୀ—ମୁଁ ଆଉ ଯୁକ୍ତି ପାରିବି ନାହିଁ, ଏ ତ ଚାକରଗୁଡ଼ାଙ୍କର ମୁଣ୍ଡ ବଢ଼ାଇ ଦେବେ; ସ୍ତ୍ରୀଙ୍କ ତୁଣ୍ଡରୁ ଏ କଥା ଶୁଣିଲେ ସେ ମଲାମୁଣ୍ଡ ଗୁଡ଼ାକ ମତେ ମାନିବେ କାହିଁ ?

ସ୍ୱାମୀ—ଏଥିରେ ତ ମୁଣ୍ଡ ବଢ଼ା କଥା କିଛି ନାହିଁ। ସେମାନେ ନ ମାନିଲେ ବାହାର କରି ଦେବା, ଦୋଷ କଲେ ଦଣ୍ଡ ଦେବା, ସେମାନଙ୍କୁ ସେମାନଙ୍କ କାମ ଶିଖାଇ ଦେବା, ଶାସନ କରିବା, ଏ କ୍ଷମତା ସବୁ ଆମର ଅଛି; କିନ୍ତୁ ଖାଇବାକୁ ଦେବାବେଳେ ଭିନ୍ନାଭିନ୍ନ କରିବା କଣ ଉଚିତ ?

ସ୍ତ୍ରୀ—ଈଶ୍ୱର ଯାହାକୁ ଯାହା ଦେଇଛନ୍ତି, ସେ ସେପରି ଖାଇବ। ପାଞ୍ଚ ଅଙ୍ଗୁଳି ତ ସମାନ ନୁହେଁ ?

ସ୍ୱାମୀ—ଏଥିଲାଗି ଯେଉଁ ଅଙ୍ଗୁଳି ସାନ ତାକୁ କଣ କାଟି ପକାଇବା ? ସାନ ଅଙ୍ଗୁଳି ଯେପରି ଆବଶ୍ୟକ, ବଡ଼ ଅଙ୍ଗୁଳି ମଧ୍ୟ ସେହିପରି ଆବଶ୍ୟକ। ସେଥିଲାଗି ସାନ ଅଙ୍ଗୁଳି ବଡ଼ ଅଙ୍ଗୁଳି ପାଖରେ ସ୍ଥାନ ପାଇଛି। କାହାକୁ ଚଟକଣିଟିଏ ମାରିବାକୁ ହେଲେ କିମ୍ବା ହାତମୁଣ୍ଡାକ ପାଟିକି ନେବାକୁ ହେଲେ ସବୁ ସାନ ବଡ଼ ଅଙ୍ଗୁଳି ଗୁଡ଼ିକ ମିଶି କରି ତ କାମ କରନ୍ତି ? ତେତେବେଳେ ସାନ ଅଙ୍ଗୁଳି କଣ ଅଲଗା ହୋଇ ରହେ ? ତେବେ ସାନ ବୋଲି ଘୃଣା କରିବା ଉଚିତ କି ?

ସ୍ତ୍ରୀ—"ଭଲ କହିଲ, କାହିଁ କଥା ନେଇ କାହିଁ ଥୋଇଲ"—ବୋଲି ଯେ ଗୋଟାଏ କଥା ଥିଲା ଶୁଣିଥିଲି ସତ ତ ! ଥିଲା ହେଉ, ମୁଁ ତ ଚାକର କଥା କହିଲି, ପୁଣି ତୋଟାଏ କଡ଼ ମହାଭାରତ ଆରମ୍ଭ ହେଲା।

ସ୍ୱାମୀ—ମୁଁ ତ ସତକଥା କହିଲି, ତମେ ନ ବୁଝି ପାରିଲେ କଣ କରିବି ? ତ ହେଉ, ମୁଁ ସାନ ବଡ଼ କଥା କହିଲି ! ତମେ

ଚାହାଲ ଗୃହକରଗୁଡ଼ାକ ଜାତରେ ସାନ, ବିଦ୍ୟା ବୁଦ୍ଧିରେ ସାନ, ଧନରେ ସାନ; ସୁତରାଂ ସେଗୁଡ଼ାକୁ ସବୁବେଳେ ଦୂର ଦୂର ମାର ମାର କରିବ, ଗୋଟା ମୋଟା କରି ମୁଠାଏ ଦେବ ! ମୁଁ ଚାହୁଁଛି ଯେ, ଏପରି ପାତର ଅନ୍ତର ଭାବଟା ଭଲ ନୁହେଁ । ସେମାନଙ୍କ ପ୍ରତି ଅନ୍ତରରେ ସ୍ନେହ ଥିବା ଆବଶ୍ୟକ ।

ସ୍ତ୍ରୀ—ଗୃହକର କୁକୁର ସମାନ । ସେ ଗୁଡ଼ାଙ୍କ ଠାରେ ସ୍ନେହ କଣ ମ ?

ସ୍ୱାମୀ—ଅହୋ, ସେମାନଙ୍କ ପେଟ ନ ପୂରିଲାରୁ ତ ସେମାନେ ଆସି ଆମ ପାଖରେ ମୁଣ୍ଡ ବାଙ୍କିଲେ; ଆମର ନଳା ଓଳାଇ, ଯୋତା ସାଫ କରି ନାନା କାମ କଲେ ! ସେମାନେ ବାର ପାଳନ୍ତି କରୁଛନ୍ତି ବୋଲି ଅମେ ସାନ୍ତ ସାନ୍ତାଣୀ ହୋଇ ହୁକୁମ ଚଳାଉ ଆଉଁ । ସଂସାରରେ ସମସ୍ତେ ସାନ୍ତ ହେଲେ ଚଳିବ କିପରି ? ଯେଉଁମାନଙ୍କ ହେତୁ ଅମେ ସାନ୍ତ ହେଲେଇଁ ସେମାନେ କଣ ଅମର ଘୃଣାର ପାତ୍ର—ନା ସ୍ନେହର ପାତ୍ର ?

ସ୍ତ୍ରୀ—ପଇସା ନେଇ କାମ କରୁଛନ୍ତି; ମାଗଣା ତ କରୁ ନାହାନ୍ତି ?

ସ୍ୱାମୀ—ପଇସା ନଅନ୍ତେ ନାହିଁ । ମାଗଣା କରନ୍ତେ ? ତାଙ୍କ ପିଲା କୁଟୁମ୍ବ ଚଳନ୍ତେ କିପରି ? ଯାହା ହେଉ ସେମାନଙ୍କର ନ ଚଳିଲା ବୋଲି ତ ସେ ଆସି ତମ ଦୁଆରେ ମୁଣ୍ଡ ବାଙ୍କିଲେ ? ତାଙ୍କର ଚଳୁଥିଲେ ସେମାନେ ତମ ତମଟା ଗୃହକର ରଖି-ଆନ୍ତେ ! ଅଛା ଚାହାଲ ଦେଖି, ଆଜି ତମେ ଯେତେଗୁଡ଼ାଏ ପିଠା ପଣା ଖିରି ଖେଚେଡ଼ି କରିଚ ଗୃହକର କଣ ତାହା ଦେଖି ନାହିଁ ?

ସ୍ତ୍ରୀ—ଦେଖନ୍ତା ନାହିଁ କାହିଁକି ମ ? ମୁଁ କଣ ଲୁଚାଇ କରି କରୁଥିଲି କି ? ସଉଦାପତି ସବୁ ସେହି ତ ବଜାରରୁ କିଣି ଆଣିଛି !

ସ୍ୱାମୀ—ତେବେ ଏ ଜିନିଷମାନ ଦେଖି ତା ମନେ ମନେ ସେ ପାଉଁ ନ ଥିବ ଯେ ଅଳ୍ପ ମୁଠିଏ ଭଲ କରି ଖାଇବି ? ଯେତେବେଳେ ନ ପାଇ ନିରାଶ ହେବ ତେତେବେଳେ ଗୋଟିଏ ଦୀର୍ଘ ନିଶ୍ୱାସ ପକାଇ ମନେ ମନେ କଣ ପାଉଁବ ? କହୁଚ, ଭଗବାନ ଯେଉଁ କାଞ୍ଜିପାଣି ଦେଇଛନ୍ତି ସେହି କାଞ୍ଜିପାଣି—ଆମକୁ ଭଲ ଜିନିସ କାହିଁ ମିଳିବ ?

ସ୍ତ୍ରୀ—ହିଁ, ସେପରି ଅବଶ୍ୟ ଭାବିବ ! ଦୃଷ୍ଟି ପଡ଼ିବ !

ସ୍ୱାମୀ—ପାଞ୍ଚ ଜଣ ଗୃହିଁ ବସିଥିବେ, ଜଣେ ଘିଅ ଅନ୍ନ ଖାଇବ, ଏଥିରେ କିଛି ସୁଖ ହେବ କି ?

ସ୍ତ୍ରୀ—ହଁ, ତା ଯାହା କହୁଛ ଠିକ୍ । ସମସ୍ତଙ୍କୁ ଦେଲା ବେଳକୁ ଏତେ ପଇସା କାହୁଁ ଆସିବ ?

ସ୍ୱାମୀ—ବେଶି ନ କଲେ ହେଲା । ସମସ୍ତଙ୍କୁ ଯାହା ଦିଆଯାଇ ପାରିବ ତାହା କରିବ । ଏହି ହେତୁରୁ ଆଗରୁ କଥା ଅଛି "ପନ୍ଥଛେଦ କରିବ ନାହିଁ" ଅର୍ଥାତ୍ ଘରେ ଯାହା ରନ୍ଧାବଢ଼ା ହେବ, ଜଣିକାଏ ହେଉ ପଛକେ ସମସ୍ତଙ୍କୁ ଦେବ । ସମସ୍ତଙ୍କୁ ନ ଦେଇ ଯାହା ଖାଇବ ତାହା ଜୀର୍ଣ୍ଣ ନ ହୋଇ ନାନା ରୋଗ ଜାତ କରାଇବ । ତମେ ଶୁଣିଛ, ଗୋଟାଏ ଗଳ୍ପ ଅଛି ।

ସ୍ତ୍ରୀ—କଣ କହିଲ, ମୁଁ ତ ଶୁଣି ନାହିଁ ।

ସ୍ୱାମୀ—ଜଣେ ରାଜା ଥିଲେ । ସେ ପ୍ରତିଦିନ ଯାହା ଖାନ୍ତି ସମସ୍ତଙ୍କ ଦିଅନ୍ତି; କିନ୍ତୁ ଟିକିଏ ପିଠା ଖାନ୍ତି, ମାତ୍ର ସେ ପିଠା କାହାକୁ ଦିଆଯାଏ ନାହିଁ । ଯେଉଁମାନେ ରାଜାଙ୍କ ପାଖରେ ବସି ଖାଆନ୍ତି, ତାଙ୍କର ନଜର ଥାଏ ସେହି ପିଠା ଉପରେ । ପିଠା ବୋଲି ସେମାନେ ଜାଣନ୍ତି ନାହିଁ; କିନ୍ତୁ ମନେ ମନେ ପାଉଁନ୍ତି—ରାଜା ଏ କି ଜିନିଷ ଖାଉଛନ୍ତି, ଆମ୍ଭମାନଙ୍କୁ କାହିଁକି ଦେଉ

ନାହାନ୍ତି ? ଏହିଠାରେ ସନ୍ଦେହ କରି ସେହି ଜିନିଷ ଉପରେ ଆଶା ରଖିଥାନ୍ତି ! ଏହାପରେ କେତେ ଦିନ ଗଲା, କ୍ରମେ ରାଜାଙ୍କର ବେରାମ ହୋଇଲା । ରାଜାଙ୍କ ଦେହ କ୍ରମେ ଶୁଖିଗଲା । ହାଡ଼ ବାହାରି ପଡ଼ିଲା । କାହିଁକି ରୋଗ, କିପରି ଭଲ ହେବ କେହି ସ୍ଥିର କରିପାରିଲେ ନାହିଁ । ବୈଦ୍ୟମାନଙ୍କ ବୁଦ୍ଧି ଦାଣ୍ଡିଲା ନାହିଁ । ଶେଷକୁ ଜଣେ ବୈଦ୍ୟ ଆସି ରାଜାଙ୍କ ଗଡ଼ବାଧି ପରୀକ୍ଷା କରି ସ୍ଥିର କଲେ ଯେ "ରାଜା ପିଠା ତରକାରି ଅନ୍ୟମାନଙ୍କୁ ନ ଦେଇ ଖାଉଛନ୍ତି । ସମସ୍ତଙ୍କର ତାରି ଉପରେ ଆଶା ଅଛି ।" ସେହି ହେତୁରୁ ରାଜାଙ୍କର ଏପରି ବେରାମ । ସେହି ଦିନଠାରୁ ସେ ପିଠା ତରକାରି ସମସ୍ତଙ୍କୁ ଦିଆଗଲା । କ୍ରମେ ଅଠ ଦଶ ଦିନ ପରେ ରାଜାଙ୍କ ଶରୀର ପୂର୍ବ ପରି ସୁସ୍ଥ ହୋଇଗଲା ।

ସ୍ତ୍ରୀ—ସତେ ! ଆମେ ମାଇପେ ଏତେ କଥା କାହୁଁ ଜାଣିବୁ ? ଆମେ ମନେ କରୁଁ, ଭଲ ଜିନିଷଟିଏ ହେଲେ ପୁଅ ଗେରସ୍ତଙ୍କୁ ଲୁଚାଇ କରି ଦେବା; ଆଉ କିଏ ଖାଇଲେ ଖାଉ, ନ ଖାଇଲେ ନାହିଁ !

ସ୍ୱାମୀ—ଏବେ ତ ବୁଝିଲ, ଆଉ ଏପରି କରିବ ନାହିଁ । ଏପରି କଲେ ଯାହାଙ୍କ ପାଇଁ ଏତେ କଥା କରିବ, ତାଙ୍କରି ଅମଙ୍ଗଳ । ତମେ ଜାଣ ସବୁ ପାପ ଗୃହସ୍ୱାମୀ ମୁଣ୍ଡରେ ! ତମେ ଧର୍ମ୍ମପତ୍ନୀ ହୋଇ କଣ ସ୍ୱାମୀର ଅମଙ୍ଗଳ ଇଚ୍ଛା କରିବ ?

ସ୍ତ୍ରୀ—ନାହିଁ ନାହିଁ, ମୁଁ ପରେ ବୁଝିଲି ଯେ, ଏଣିକି ଆଉ ଏପରି କରିବି ନାହିଁ ।

ସ୍ୱାମୀ—ଅଚ୍ଛା, ସେ କଥା ବୁଝିଲ । ଆଉ ଗୋଟିଏ କଥା ଦେଖ, ଏତେ ପ୍ରକାର ଜିନିଷ ରନ୍ଧାବଢ଼ା ନ କରିଥିଲେ କଣ ଚଳି ନ ଥାନ୍ତା ? କେତେ ଖର୍ଚ୍ଚ ହେଲା !

ସ୍ତ୍ରୀ—ଖର୍ଚ୍ଚ ହୁଏବା କାହିଁକି ଲାଗିଛି ମ ? ଖାଇବା ପାଇଁ ତ ଏତେ କଥା ! ଯେ ରୋଜଗାର କରିବ ସେ ଖାଇବ ନାହିଁ ?

ସ୍ୱାମୀ—ତେବେ ମଣିଷ ଜନ୍ମଟା କେବଳ ଖାଇବା ଲାଗି ?

ସ୍ତ୍ରୀ—ନୁହେଁ କଣ ? କଥାରେ ଅଛି "ଯାହା ଖାଇବ ପେଟକୁ, ଯାହା ଦେବ ବାଟକୁ, ଯାହା ଥୋଇବ ଗଣ୍ଠିକୁ ।"

ସ୍ୱାମୀ—କଥାଟା ମିଛ ନୁହେଁ, କିନ୍ତୁ ଧନର ବ୍ୟୟ ଲାଗି ପେଟକୁ ଖାଇବା ଏକମାତ୍ର ଉପାୟ ନୁହେଁ; ଆଉ ଗୋଟିଏ କଥା, ଯାହା ଦେବ ବାଟକୁ ଅର୍ଥାତ୍ ନିଜେ ଖାଇବ ଏବଂ ଅନ୍ୟକୁ ଖୁଆଇବ । ଦେଖ, ଖାଇବା ଅପେକ୍ଷା ଖୁଆଇବାଟାରେ ବିଶେଷ ଧର୍ମ । ଲୋକେ ଖାଆନ୍ତି କାହିଁକି ?

ସ୍ତ୍ରୀ—ଲୋକେ ନ ଖାଇଲେ ବଞ୍ଚିବେ କିପରି ?

ସ୍ୱାମୀ—ତେବେ ଯେତିକି ଖାଇଲେ ବା ଯାହା ଖାଇଲେ ଲୋକ ବଞ୍ଚିବ ତାହା ଖାଇଲେ ହେଲା । ଆପଣା ଖାଇବାରେ ବହୁତ ଖର୍ଚ୍ଚ ନ କରି ଆପଣା ଲୋକ ଗୁହିଁ ଯାହାର ନାହିଁ ବା ଯେ ଅସମର୍ଥ, ତାକୁ କିଛି ଦେଲେ କେତେ ଧର୍ମ ହେବ ! ଆପଣା ଉଦର ପୂରାଇ ହେଉଡ଼ି ମାରିବା ମନୁଷ୍ୟର ଧର୍ମ ନୁହେଁ । ପଶୁମାନେ ଆପଣା ଉଦର ପୂରଣ କରନ୍ତି । ଯେବେ ଆପଣା ଉଦର ପୂରଣ କରିବା ପ୍ରଧାନ ଉଦ୍ଦେଶ୍ୟ, ମନୁଷ୍ୟ ଓ ପଶୁ ମଧ୍ୟରେ ପ୍ରଭେଦ କଣ ? ମୁଁ ଖିରି ଖେଚେଡ଼ି ଖାଉଥିବି, ମୋ ପଡ଼ିଶାବାଲାଟି ପେଟରେ ଓଦା କନା ଦେଇ ତିନି ଦିନ ଉପବାସରେ ଛଟପଟ ହେଉଥିବ, ଏ କଥା ଦେଖି ଯେଉଁ ଲୋକ ଆପଣା ବଳ ଥିଲେ ବି ଅନ୍ୟକୁ ସାହାଯ୍ୟ ନ ଦିଏ ସେ ପଶୁଠାରୁ ଅଧିକ ହୀନ ନୁହେଁ କି ?

ସ୍ତ୍ରୀ—ଯାହା କପାଳେ ଯାହା ଅଛି ନା ?

ସ୍ୱାମୀ—ହେଲା, ମାନିଲି, ପ୍ରତ୍ୟେକ ଲୋକ ଅପଣା କର୍ମଫଳ ଅପେ ଭୁଞ୍ଜନ୍ତି । ଅପଣା ସ୍ୱର୍ଗ ନର୍କ ଅପଣା ହାତରେ ! ମନୁଷ୍ୟଠାରେ ତେବେ ଦୟା ବୋଲି ଗୋଟିଏ ଗୁଣ କାହିଁକି ଅଛି ? ସତ୍‌ପାତ୍ରରେ ଦାନ ନ କଲେ ଦୟାର ଅବଶ୍ୟକତା କଣ ? ଆଚ୍ଛା, ତୁମେ ସେ ଦିନ ସମାମା ବୁଢ଼ୀକି ଲୁଗା ଖଣ୍ଡିଏ ଦେଲ କାହିଁକି ?

ସ୍ତ୍ରୀ—ତାକୁ ଦେଖି ମୋତେ ବଡ଼ ଲାଗିଲା । ମାଘମାସ ଶୀତ, ବୁଢ଼ୀଟା ଜାଡ଼ରେ ଥର ଯାଉଥିଲା । ତାର କେହି ନାହିଁ, ଏଣେ ବ ଅପଣା ହାତରେ ଧନ ନାହିଁ, କେତେ ଥର ଅସି କାନ୍ଦ ଭର କହିଲା ! ମୋତେ ତା ଦୁଃଖ ଦେଖି କାନ୍ଦ ମାଡ଼ିଲା । ଲୁଗା ଖଣ୍ଡିକ ଦେଲି ତାକୁ ।

ସ୍ୱାମୀ—ବେଶ କଲ ଦେଲ ! ପର ଦୁଃଖ କଷ୍ଟ ଦେଖି ଯାହାର ମନ ନ ଟଳଲେ, ଯାହାକୁ କାନ୍ଦ ନ ମାଡ଼େ, ସେ କଣ ମନୁଷ୍ୟ ? ସେ ପଶୁ ! ଶୁଣି ବଡ଼ ଖୁସି ହେଲି । ଦେଖ, ଗରିବମାନଙ୍କ ପ୍ରତି ସମସ୍ତ ସମୟରେ ଦୟା କରୁଥିବ । ତମେ ଯେବେ ନିର୍ଦ୍ଦୟ ହେବ, ତମ ପିଲାଛିଲାମାନେ ମଧ୍ୟ କୃପଣ ହେବେ । କଥା ଅଛି "ଅଦାତା ବଂଶଦୋଷେଣ ।"

ସ୍ତ୍ରୀ—ଅଦାତା ବଂଶଦୋଷେଣ, କଣ କହିଲ ବୁଝିପାରିଲି ନାହିଁ ।

ସ୍ୱାମୀ—ପିତା ମାତାମାନଙ୍କୁ କୃପଣ ହେବାର ଦେଖିଲେ ପିଲାମାନେ କୃପଣ ହୁଅନ୍ତି । ଏହିପରି କ୍ରମେ ବଂଶ ମଧ୍ୟରେ କୃପଣତା ପ୍ରବେଶ କରେ । ବଂଶର ସମସ୍ତ ଲୋକମାନେ କୃପଣ ହୋଇ ପଡ଼ିଲେ ଭବିଷ୍ୟତ ବଂଶଧରମାନେ ମଧ୍ୟ କୃପଣ ହୁଅନ୍ତି । ସୁତରାଂ ପିଲାମାନେ ଅଦାତା ନ ହେବା ଉଦ୍ଦେଶ୍ୟରେ ପିତା ମାତା ମାନେ ମଧ୍ୟ ଅଦାତା ହେବା ବାଞ୍ଛନୀୟ ନୁହେଁ । ତୁମ୍ଭେ

ଜାଣ ହରିଶ୍ଚନ୍ଦ୍ର କେତେ ବଡ଼ ଦାତା ଥିଲେ ! ତାଙ୍କ ପୁଅ
ରୋହିତାଶ୍ୱ ତ ଊଣା ଦାତା ନ ଥିଲେ !

ସ୍ତ୍ରୀ—ହରିଶ୍ଚନ୍ଦ୍ରଙ୍କ କଥା ତ ମୁଁ ଜାଣେ ନାହିଁ, ଟିକିଏ କହିଲ ?

ସ୍ୱାମୀ—ପୂର୍ବକାଳରେ ହରିଶ୍ଚନ୍ଦ୍ର ନାମକ ଜଣେ ରାଜା ଥିଲେ ।
ହରିଶ୍ଚନ୍ଦ୍ର ବଡ ଦାତା ଓ ସତ୍ୟବାଦୀ ଥିଲେ । ହରିଶ୍ଚନ୍ଦ୍ର ଦିନେ
ମୃଗୟା କରିବା ଲାଗି ବନକୁ ଯାଇଥିଲେ । ବିଶ୍ୱାମିତ୍ରଙ୍କ ସହିତ
ଦେଖା ହେବାରୁ ବିଶ୍ୱାମିତ୍ର ମହର୍ଷି ହରିଶ୍ଚନ୍ଦ୍ରଙ୍କୁ ଦାନ
ମାଗିଲେ । ହରିଶ୍ଚନ୍ଦ୍ର ପୃଥିବୀ ଦାନ କଲେ । ବିଶ୍ୱାମିତ୍ର ଦାନ
ଗ୍ରହଣ କଲେ ଏବଂ ଦକ୍ଷିଣାପ୍ରାର୍ଥୀ ହେଲେ । ହରିଶ୍ଚନ୍ଦ୍ର
ଏକ ଲକ୍ଷ ସ୍ୱର୍ଣ୍ଣମୁଦ୍ରା ଦେବାଲାଗି ଏକ ବରଷ ସମୟ ନେଲେ ।
ହରିଶ୍ଚନ୍ଦ୍ର ପୃଥିବୀ ଦାନ କରି ସର୍ବସ୍ୱାନ୍ତ ହେଲେ, ରାଜସିଂହାସନ
ତ୍ୟାଗ କରି ସ୍ତ୍ରୀ ପୁତ୍ରଙ୍କୁ ନେଇ କାଶୀକୁ ଗଲେ । କାଶୀ
ପୃଥିବୀର ବାହାରେ; ସୁତରାଂ ସେ ସ୍ଥାନ ପୃଥିବୀ ଦାନ ମଧ୍ୟରୁ
ବହିର୍ଭୂତ । ହରିଶ୍ଚନ୍ଦ୍ର କାଶୀରେ ପ୍ରବେଶ ହେଲାବେଳେ
ବ୍ରାହ୍ମଣମାନେ ଆସି ଭିକ୍ଷା କଲେ । ରାଜାଙ୍କଠାରେ ଏକ
କପର୍ଦ୍ଦକ ନାହିଁ । କେବଳ ଏକବସ୍ତ୍ର ହୋଇ ବାହାରିଛନ୍ତି ।
ହରିଶ୍ଚନ୍ଦ୍ରଙ୍କ ପୁତ୍ରଙ୍କଠାରେ ଗୋଟିଏ ମୋତିହାର ଥିଲା ।
ବ୍ରାହ୍ମଣମାନଙ୍କ କଥା ଶୁଣି ରୋହିତାଶ୍ୱ କହିଲେ, "ମାତା ପିତା
ପୃଥିବୀ ଦାନ କରି ପାରିଲେ, ମୁଁ ଏ ଛାର ମୋତି ହାରଟାକୁ
ଦାନ ଦେଇ ପାରିବି ନାହିଁ"? ଏହା କହି ଗଳାରୁ ହାର
ବାହାର କରି ବ୍ରାହ୍ମଣମାନଙ୍କୁ ଦେବାକୁ ଯିବା ସମୟରେ
ବିଶ୍ୱାମିତ୍ର ଆସି ଉପସ୍ଥିତ । ବିଶ୍ୱାମିତ୍ର କହିଲେ, "ଦେଖ
ରୋହିତାଶ୍ୱ ! ତୁମ୍ଭେ କାହା ସମ୍ପତ୍ତି ଦାନ ଦେଉଛ ? ପର
ଧନରେ ବନ୍ଧୁ ଅର୍ଜି କି ଫଳ ଅଛି ? ତୁମ୍ଭ ପିତା ପୃଥିବୀ ଦାନ

କରି ସାରିଛନ୍ତି, ସୁତରାଂ ପୃଥିବୀରେ ଥିବା ଯାବତୀୟ ଚଳନ୍ତ ଅଚଳନ୍ତ ସମ୍ପତ୍ତି ସବୁ ମୋର । ଏ ହାର ମଧ୍ୟ ମୋର, ମୋତେ ଦିଅ; ତୁମ୍ଭେ ଘର ଛାଡ଼ି ଆସିଲା ବେଳେ ମୋତେ ନ କହି ଏ ହାର ଆଣିଲ କପର ?" ଏହା କହି ବିଶ୍ୱାମିତ୍ର ହାର ନେଇଗଲେ । ବ୍ରାହ୍ମଣମାନେ ମଧ୍ୟ ବିଶ୍ୱାମିତ୍ରଙ୍କ ଈଦୃଶ ବ୍ୟବହାର ଦେଖି ଅସନ୍ତୁଷ୍ଟ ଓ ଅଶ୍ରଦ୍ଧାନ୍ୱିତ ହୋଇ ଚାଲିଗଲେ । ଏହିପରି କିଛି ଦିନ ଗଲା ପରେ ଦକ୍ଷିଣା ଦେବାର ଶେଷ ଦିନ ଉପସ୍ଥିତ ହେଲା । ଦକ୍ଷିଣା ନ ଦେଲେ ସତ୍ୟ ଭଙ୍ଗ ହେବ, ସୂର୍ଯ୍ୟବଂଶ ରସାତଳକୁ ଯିବ; ମାତ୍ର ଉପାୟ କଣ ? ଦିନ ଅବସାନ ହୋଇ ଆସୁଛି, ସୂର୍ଯ୍ୟ ଅସ୍ତାଚଳ ଆଡ଼କୁ ଚାଲିଛନ୍ତି, କି ଉପାୟ କରିବେ ଏ କଥା ଭାବି ଭାବି ହରିଶ୍ଚନ୍ଦ୍ର ଓ ଶୈବ୍ୟା ଚିନ୍ତିତ । ଶୈବ୍ୟା ହରିଶ୍ଚନ୍ଦ୍ରଙ୍କ ସ୍ତ୍ରୀଙ୍କ ନାମ । ଶୈବ୍ୟା ବଡ଼ବୁଦ୍ଧିମତୀ; ସତୀ ସାଧ୍ୱୀ । ଶୈବ୍ୟା ପତିଙ୍କ ସତ୍ୟ ରକ୍ଷା କରିବା ଲାଗି ଅତି ବ୍ୟାକୁଳା । କି ଉପାୟରେ ଟଙ୍କା ଆସିବ, ଏ କଥା ଚିନ୍ତା କରି ସ୍ଥିର କଲେ ଯେ ସେ ଆତ୍ମବିକ୍ରୟ କରିବେ ଏବଂ ଅନ୍ୟ ଘରେ ଦାସୀ ସ୍ୱରୂପ କାର୍ଯ୍ୟ କରିବେ । କାଶୀର ଜଣେ ବ୍ରାହ୍ମଣ ନିକଟରେ ୫୦୦୦ଟଙ୍କା ମୂଲ୍ୟରେ ଅପେ ବିକ୍ରୀତ ହୋଇ ଦାସୀ ହେଲେ ଏବଂ ମୂଲ୍ୟ ଟଙ୍କା ବିଶ୍ୱାମିତ୍ରଙ୍କୁ ଦେଲେ । ରୋହିତାଶ୍ୱକୁ ମଧ୍ୟ ଶୈବ୍ୟାଙ୍କ ସାଙ୍ଗରେ ରହିବା ଲାଗି ବ୍ରାହ୍ମଣ ଅନୁମତି ଦେଲା । ଦକ୍ଷିଣା ଅର୍ଦ୍ଧେକ ପରିଶୋଧ ହେଲା । ହରିଶ୍ଚନ୍ଦ୍ର ଆତ୍ମବିକ୍ରୟ କରି ଚଣ୍ଡାଳର ଦାସତ୍ୱ ସ୍ୱୀକାର କଲେ ଏବଂ ଚଣ୍ଡାଳ ଅବଶିଷ୍ଟ ଅର୍ଦ୍ଧେକ ମୂଲ୍ୟ ବିଶ୍ୱାମିତ୍ରଙ୍କୁ ଦେଲେ । ବିଶ୍ୱାମିତ୍ରଙ୍କ ଋଣ ପରିଶୋଧ ହେଲା । ସସାଗରା ପୃଥିବୀର ଏକାଧିପତି ସତ୍ୟ ପ୍ରତିପାଳନ

କରିବାଲାଗି ଚଣ୍ଡାଳର ଦାସତ୍ୱ ସ୍ୱୀକାର କଲେ । ଶ୍ମଶାନ ଘାଟରେ ଶବଦାହ କାର୍ଯ୍ୟରେ ହରିଶ୍ଚନ୍ଦ୍ର ନିଯୁକ୍ତ ହେଲେ ଏବଂ ବ୍ରାହ୍ମଣ ଘରେ ଶୈବ୍ୟା ଦାସୀବୃତ୍ତି ଅବଲମ୍ବନ କଲେ । କୋଟିପତି ହରିଶ୍ଚନ୍ଦ୍ର ଶତ ଶତ ସେବାକାରୀ-ପରିବୃତ ହୋଇ ଅମୃତ ଭୋଜନ କରି ହଂସତୂଳତୂଳିତଳ୍ପ ଉପରେ ଶୟନ କରୁଥିଲେ । ଆଜି ଦାନର ମାହାତ୍ମ୍ୟ ଓ ସତ୍ୟର ମର୍ଯ୍ୟାଦା ରକ୍ଷା କରିବା ଲାଗି ହରିଶ୍ଚନ୍ଦ୍ର ପଥର ଭିକାରୀ ନିରନ୍ନ ଓ ଚଣ୍ଡାଳର ଦାସ । ଶୈବ୍ୟାଙ୍କ ଅବସ୍ଥା ଠିକ୍ ଏହିପରି । କାଲି ଶତ ଶତ ପରିଚାରିକା-ପରିବୃତା ଶୈବ୍ୟା କେତେପ୍ରକାର ଅଳଙ୍କାରଭୂଷିତା ଥିଲେ, ମାତ୍ର ଆଜି ସେ ପଥର ଭିକାରିଣୀ; ବ୍ରାହ୍ମଣର ଦାସୀ । ବଡ଼ କଠୋର ପରୀକ୍ଷା । ଲୋକସାଧାରଣ ନିକଟରେ ଏ ପ୍ରକୃତ ସମ୍ଭବପର ନୁହେଁ ସତ, ମାତ୍ର ଏକାବେଳକେ ଅସମ୍ଭବ ବୋଲି କୁହାଯାଇ ନ ପାରେ । ତଥାପି ଏ ତ ଆମ୍ଭମାନଙ୍କ ଜାତୀୟ ଆଦର୍ଶ । ଆମମାନଙ୍କ ଦେଶରେ ଏପରି ଦାନୀ ଓ ସତ୍ୟବାଦୀ ଲୋକ ଥିଲେ । ଦାତା କର୍ଣ୍ଣ ଓ ବଳିରାଜାଙ୍କ କଥା ତ ଶୁଣିଥିବ । ଦାତାକର୍ଣ୍ଣ ସତ୍ୟ ବ୍ରତପାଳନ କରିବା ଲାଗି ଆପଣା ପୁଅର ମୁଣ୍ଡ ସ୍ୱହସ୍ତରେ ଛେଦନ କରି ଦେବାକୁ ପଶ୍ଚାତ୍ପଦ ହୋଇ ନ ଥିଲେ । ଆମେମାନେ ସେହି ଦେଶର ଲୋକ । କେତେ ଦିନ ଅନ୍ତେ ରୋହିତାଶ୍ୱଙ୍କର ସର୍ପ ଦଂଶନରେ ମୃତ୍ୟୁ ହେଲା । ଶୈବ୍ୟା ଘୋର ଅମାନିଶାର ଭୟଙ୍କର ଅନ୍ଧାରରେ ପୁତ୍ରର ଶବ ଦାହ କରିବାଲାଗି ପୁଅକୁ ନେଇ ଶ୍ମଶାନକୁ ଗଲେ । ସେଠାରେ ପତିଙ୍କ ସହିତ ଭେଟ ହେଲା ଏବଂ ବିଶ୍ୱାମିତ୍ର ସେଠାକୁ ଆସି ମନ୍ତ୍ରଜଳ ସେଚନ କରି ମୃତ ପୁତ୍ରକୁ ବଞ୍ଚାଇ ଦେଲେ । ପରୀକ୍ଷା ଶେଷ ହେଲା । ହରିଶ୍ଚନ୍ଦ୍ର ସ୍ୱଦେହରେ ସ୍ୱର୍ଗକୁ ଗଲେ । ସତ୍ୟ ଓ ଦାନର ଏହିପରି ମାହାତ୍ମ୍ୟ ।

ଆଉ ଗୋଟିଏ କଥା ମନେ ରଖିବା ଆବଶ୍ୟକ । ଦାନ କଲବେଳେ ମନରେ କୌଣସି ଗର୍ବ କରିବ ନାହିଁ । ମୁଁ ଦେଲେ ଲୋକେ ମତେ ପ୍ରଶଂସା କରିବେ, ଏପରି ଉଦ୍ଦେଶ୍ୟ ମନେ ରଖି ଦାନ କରିବ ନାହିଁ । ଦରିଦ୍ର ପାତ୍ର ଦେଖି ନିଷ୍କାମଭାବରେ ଦାନ ଦେବ ।

---

## ସପ୍ତମ ପରିଚ୍ଛେଦ

ସ୍ୱାମୀ—ଆଜି ରାଗରେ ତମ ତମ ହେଉଛ କାହିଁକି ?

ସ୍ତ୍ରୀ—ତମେ ମତେ କିଛି ପଚାର ନାହିଁ । ତମ କଥା ଶୁଣି ମତେ ଚଳ ମାଡ଼ୁଛି । ତମେ ତ ଘର କଥା କିଛି ବୁଝିବ ନାହିଁ ! ଆଜି ଗୋଟିଏ ଓପା ଯେ, ଠକା ଦେଲି ପାଞ୍ଚଟା । ବାରଲୋକେ ଆସି ଦିଅ ଦିଅ ବୋଲି ମୋ ପ୍ରାଣ ଖାଇଯିବେ, ତମ ଦେହକୁ କଣ ଏ କଥା ଲାଗୁଛି ? ଚାକର ବାକର ଗୁଡ଼ାକ ମୋ କଥା ଶୁଣିବାକୁ ନାହାନ୍ତି । ମୁଁ ଏ ଘର କଥାକୁ ଆଉ ପାରିବ ନାହିଁ । ତମେ ଆଉ ମତେ ବେଶି ଚଳାଅ ନାହିଁ !

ସ୍ୱାମୀ—ବାପ୍‌ରେ ବାପ ! ସାକ୍ଷାତ୍ ଦଶଭୁଜା ମହାମାୟା !

ସ୍ତ୍ରୀ—ପୋଡ଼ା ଘରେ କଣ ଚୂନ ଲଗାଉଛ ? ଏଇଲାଗେ ହାଣ୍ଡି କୁଣ୍ଡାଇ ସବୁ ଭାଙ୍ଗି ଦେଇ ତୁନି ହୋଇ ବସିବି । ତମ ଘର ତମେ ବୁଝୁଥାଅ !

ସ୍ୱାମୀ—ହଇ ହେ, ତମେ ଏତେ ରାଗୁଛ କାହିଁକି ? ରାଗଟା ବଡ଼ ଖରାପ । ରାଗ ପରମଚଣ୍ଡାଳ, ଯେ ରାଗିକରି କଥା କହେ ତା ଦେହରୁ ରକ୍ତ ଶୁଖିଯାଏ, ମୁଖ ବିବର୍ଣ୍ଣ ହୋଇଯାଏ । ଆଚ୍ଛା, ତମେ ଦର୍ପଣରେ ମୁହଁ ଦେଖିଲ ?

ସ୍ତ୍ରୀ—ନ ରାଗିଲେ ଏମାନଙ୍କ କାମ କରିବେ ?

ସ୍ୱାମୀ—ବେଶି ରାଗିଲେ ବେଶି କାମ ହେବ କିପରି ?

ସ୍ତ୍ରୀ—ଡର କରି କାମ କରିବେ !

ସ୍ୱାମୀ—ଏ କଥା ମିଛ । ଯେଉଁ କାର୍ଯ୍ୟ ପ୍ରତି ଯାହାର ସ୍ନେହ ନ ହେବ ସେ ସେ କାର୍ଯ୍ୟ କେବେ କରିବ ନାହିଁ । ମିଠା କଥା କହିଲେ ଯେତେ କାମ ହେବ, କଡ଼ା କଥା କହିଲେ ସେପରି କାମ ହେବ ନାହିଁ । ମିଠା କଥା ଓ କଡ଼ା କଥା ମଧ୍ୟରେ ପ୍ରଭେଦ କଣ ଜାଣ ?

ସ୍ତ୍ରୀ—ମୁଁ ଏତେ କଥା ଜାଣେ ନାହିଁ ! ତମର ସିନା ପଣ୍ଡିତର ଶକ୍ତି ଅଛି !

ସ୍ୱାମୀ—ମିଠା କଥାରେ ଶତ୍ରୁ ମିତ୍ର ହୋଇ ପାରେ; ମାତ୍ର କଡ଼ା କଥାରେ ମିତ୍ର ଶତ୍ରୁ ହୁଏ । ପ୍ରିୟ କଥା କହିଲେ ପାଷାଣ ତରଳି ଯାଏ; ମାତ୍ର ଅପ୍ରିୟ କଥା କହିଲେ ପାଣି ମଧ୍ୟ ପଥର ହୋଇଯିବ ।। ସର୍ବଦା ମଧୁର ବାକ୍ୟ କହିବ । ସର୍ବଦା ଲୋକଙ୍କୁ ଅପ୍ରିୟ କଥା କହିଲେ ଲୋକର ଚରିତ୍ର ଖରାପ ହୋଇଯିବ । ଚାକର ତ ମଣିଷ, ଚାକରକୁ ପୁଅ ପରି ସ୍ନେହ କରିବ ।

ସ୍ତ୍ରୀ—ପୁଅକୁ ଦୋଷ ଅଦୋଷରେ କଣ ଗାଳି ଦିଆଯାଏ ନାହିଁ ?

ସ୍ୱାମୀ—ଗାଳି ଦିଆଯାଏ ନାହିଁ କଣ ? ତମେ କଣ ମନେ କରୁଛ ଖାଲି ଗାଳି ଦେଲେ ପୁଅର ଚରିତ୍ର ବଦଳି ଯିବ ? ଦୋଷର କଣ ଦଣ୍ଡ ନାହିଁ ? ଅବଶ୍ୟ ଅଛି, କିନ୍ତୁ ଗାଳି ପ୍ରକୃତ ଦଣ୍ଡ ନୁହେଁ ।

ସ୍ତ୍ରୀ—ତେବେ ଲୋକେ ଗାଳି ଦିଅନ୍ତି କାହିଁକି ?

ସ୍ୱାମୀ—ସେଇଟା କେବଳ ମୂର୍ଖତା । ଗାଳି ଦେବା ଅପେକ୍ଷା କଅଁଳ କଥା କହି ଦୋଷ ଦେଖାଇ ସତର୍କ କରିଦେଲେ ବିଶେଷ ଫଳ ହେବ । କୌଣସି ଲୋକକୁ ସର୍ବଦା କଡ଼ା କଥା କହି ବିରକ୍ତ କଲେ ଲୋକର ପ୍ରକୃତି ମନ୍ଦ ହୋଇ ଯାଏ ଏବଂ ସେ ବିରକ୍ତ ହୋଇ ଉତ୍ତର ଦିଏ । ଦୋଷ ଦେଖିଲେ ପଦେ ଅଧେ କହିଦେଇ ଅନ୍ୟ ବେଳେ ଯିଠି ଆଉଁଷି କଅଁଳ କଥା କହିଲେ ଲୋକ ଖୁସି ହୋଇ ଅନେକ କାର୍ଯ୍ୟ କରି ପକାଏ; ମାତ୍ର କଡ଼ା କଥା କହିଲେ ଲୋକ ଚିଡ଼ ଚିଡ଼ା, ଗାଲୁଆ ଓ ଲଦ୍‌ଦାର ହୁଏ, ମନେ ମନେ କରେ ଏ କାମଟା ନ କଲେ କଣ କରିବେ—କହିଲେ ଦିପଦ କହିବେ ! ସୁତରାଂ ଏ ବିଷୟରେ ଭାଗବତର ନିମ୍ନଲିଖିତ ଉପଦେଶଟିକୁ ସର୍ବଦା ମନେ ରଖିବ—

ଅମୃତ ବିନୟ ବଚନ,
କହି ତୋଷିବ ପ୍ରାଣିମନ ।

ସ୍ତ୍ରୀ—ଯାହା କହିଲ, ବୁଝିଲି; ମାତ୍ର ଚାକରଗୁଡ଼ାକ କଥା କଥାକେ ଉତ୍ତର ଦେଲେ କିଏ ସହିବ ?

ସ୍ୱାମୀ—ଅବଶ୍ୟ ସହିବା ର କଥା ନୁହେଁ, ଚାକରର ଉଚିତ ଯେ କୌଣସି କଥାର ଉତ୍ତର ଦେବ ନାହିଁ, ନମ୍ର ଭାବରେ କହି ଅପଣା ଦୋଷ ମାଗିନେବ । ହୁକୁମ ମାଗିକେ କାର୍ଯ୍ୟରେ ହାଜର ଥିବ । ପୁର୍ବରୁ କଥା ଅଛି, "ଭୃତ୍ୟଷ୍ଟୋତ୍ତରଦାୟକ" ବଡ଼ ମନ୍ଦ । ନିତାନ୍ତ ଯେ ଅବାଧ ହେଲା ତାକୁ କହିଦେବ, "ବାବା ତୋର ଆମର ଏତିକି !" ଚାକରଙ୍କର ଉଚିତ ଯେ ସେମାନେ ଆମମାନଙ୍କୁ ମା ବାପ ପରି ମାନ୍ୟ କରିବେ ଓ ଭକ୍ତି କରିବେ ଏବଂ ଆମମାନଙ୍କର ଉଚିତ ଯେ ଆମେମାନେ ସେମାନଙ୍କୁ

ପୁତ୍ର ତୁଲ୍ୟ ସ୍ନେହ କରିବା । ଅଚ୍ଛା, ଏ କଥା ତ ହେଲା । ଏବେ କହିଲ, ଆଜି ଏ ପିଠାପଣାର ଆୟୋଜନ କାହିଁକି ?

ସ୍ତ୍ରୀ—ଆଜି ପରା ସାବିତ୍ରୀବ୍ରତ ।

ସ୍ୱାମୀ—ସତେ ! ମୁଁ ତ ଜାଣି ନ ଥିଲି !

ସ୍ତ୍ରୀ—ତମେ କଣ ଜାଣିବ ? ଟଙ୍କା ତ ଦେଲ ପାଞ୍ଚୋଟା, ଏତିକରେ କିପରି ଚଳିବ ମ ?

ସ୍ୱାମୀ—ଆହେ, ଚଳାଇ ନେଲେ ସବୁ ଚଳିବ । ଶହେ ଟଙ୍କାର ପିଠାପଣା କରି ବାଣ୍ଟି ଦେଲେ ବି ନଅଣ୍ଟ ହେବ ।

ସ୍ତ୍ରୀ—ହେଲା ଏବେ, ଯାହାର ଅଛି ସେ କଣ କରୁ ନାହିଁ ?

ସ୍ୱାମୀ—ମୁଁ ତ ସେ କଥା ମନା କରୁ ନାହିଁ । ଯାହାର ଯେତିକି ବଳ ପାଇବ, ସେ ସେତିକି କରିବ; ଆମର ଯେତିକି ବଳ ପାଇଲା ତେତିକି କଲେଇଁ ।

ସ୍ତ୍ରୀ—ହେଲା, ଏବେ ମୋର ସେଥିରେ କଅଣ ଅଛି ? ତମେ ରୋଜଗାର କରୁଛ, ନାଁ ଗାଁ ପଡୁଛି, ପାଞ୍ଚଲୋକେ ଆଶା କରି ଆସିବେ । ସେଥିଲାଗି କହୁଛି ସିନା !

ସ୍ୱାମୀ—ହଁ, ଯାହା କହୁଛ ସେ କଥା ସତ; ମାତ୍ର ଦେଖ ଲୋକେ ଅନ୍ୟର ଅବସ୍ଥା ବୁଝନ୍ତି ନାହିଁ । କେବଳ ନାଁ ଗାଁ ପଡ଼ିବ ବୋଲି ଆମେ ଯେ ଫୁଙ୍ଗୁଳା ହୋଇ ବସିବା ସେ କଥା ଠିକ୍ ନୁହେଁ ! ଆମ ଚୂନାକୁ ଚାହିଁ ଆମେ ପିଠା କରିବା । ଏ ତ ଧନୀକିଆ କଥା ନୁହେଁ, ସବୁ ଦିନେ ଯେପରି ଚଳିବ ସେପରି ଚଳିଲେ ସିନା ହେବ ? ଆଜି ଖାଇ ପିଇ ମଉଜ କରି ଉଡ଼ାଇ ଦେଲେ କାଲିକି କଣ କରିବା ? ଲୋକର ସବୁବେଳେ ଘର ଢାଲକୁ ଚାହିଁ ଚଳିବା ଉଚିତ । ମୁଁ କହୁ ନାହିଁ ଯେ ଲୋକର ଧନ ଥିଲେ ବି ସେ ପେଟକୁ ଖାଇବ ନାହିଁ, କି

ଅନ୍ୟ ଲୋକଙ୍କୁ ଦେବ ନାହିଁ; ମୁଁ କହୁଛି ଆୟ ଦେଖି ବ୍ୟୟ କରିବା ଉଚିତ । ସବୁବେଳେ ଅଋଣୀ ହେବାକୁ ଚେଷ୍ଟା କରିବା ଉଚିତ ।

ସ୍ତ୍ରୀ—ହଁ, ସେ କଥା ଯାହା କହିଲ ସତ । ଗଡସିଂହର ଘର ତ ଏତେ ବଡ଼ ଘର ଥିଲା, ଆୟ ଦେଖି ବ୍ୟୟ ନ କଲେ ବୋଲି ସୁନାଘର ଦଣ୍ଡକେ ଚୂନା ହୋଇଗଲା ।

ସ୍ୱାମୀ—ତାହା ତ ମୁଁ ଅନେକ ଥର କହିବି ? ଆଚ୍ଛା, ସାବିତ୍ରୀ ବ୍ରତର ଉଦ୍ଦେଶ୍ୟ କଣ କହିଲ ?

ସ୍ତ୍ରୀ—ଉଦ୍ଦେଶ୍ୟ କଣ ମୁଁ ଜାଣେ ନାହିଁ, ତେବେ ସଧବା ସ୍ତ୍ରୀମାନେ ସମସ୍ତେ କରନ୍ତି ବୋଲି ମୁଁ କରେଁ ।

ସ୍ୱାମୀ—ଓଷାପୂଜା ବେଳେ ବ୍ରାହ୍ମଣ ଯେଉଁ କଥା କହେ ଶୁଣିଛ ?

ସ୍ତ୍ରୀ—ହଁ, ଶୁଣିଛି ।

ସ୍ୱାମୀ—କଣ ଶୁଣିଛ କହିଲ ?

ସ୍ତ୍ରୀ—ପୂର୍ବକାଳରେ ଅଶ୍ୱପତି ନାମକ ଜଣେ ରାଜା ଥିଲେ । ସେ ଅପୁତ୍ରିକ ହେବାରୁ ମହାଦେବଙ୍କ ନିକଟରେ ବରପ୍ରାର୍ଥୀ ହୋଇଲେ । ମହାଦେବ ସନ୍ତୁଷ୍ଟ ହୋଇ ବର ଦେଲେ ଯେ, ସେ ଗୋଟିଏ କନ୍ୟା ଲାଭ କରିବେ, ମାତ୍ର ସେ କନ୍ୟା ପୁତ୍ର ଅପେକ୍ଷା ବିଶେଷ ନାମ କରିବ । କେତେ ଦିନ ପରେ ରାଣୀ ଗୋଟିଏ କନ୍ୟା ଲାଭ କଲେ, ସେ ଏହି ସାବିତ୍ରୀ । ସାବିତ୍ରୀ ସାକ୍ଷାତ୍ ଦେବୀ । ସୁଲକ୍ଷଣୀ ସାବିତ୍ରୀଙ୍କର କ୍ରମେ ବୟସ ବୃଦ୍ଧି ହେଲା ଏବଂ ତାଙ୍କ ପିତା ଉପଯୁକ୍ତ ବର ନ ପାଇ ବଡ଼ ଚିନ୍ତିତ ହେଲେ । ସାବିତ୍ରୀଙ୍କ ତେଜ ଓ ଦେହ କାନ୍ତି ଦେଖି ଅନ୍ୟାନ୍ୟ ରାଜକୁମାରମାନେ ତାଙ୍କ ପାଣି ଗ୍ରହଣ କରିବା ଲାଗି ସାହସୀ ହେଲେ ନାହିଁ । ଅବଶେଷରେ ଅଶ୍ୱପତି ଅନନ୍ୟୋପାୟ

ହୋଇ ସାବିତ୍ରୀଙ୍କୁ ଆହ୍ୱାନ କରି କହିଲେ, "ମା ! ମୁଁ ଏତେ କାଳ ଖୋଜି ଖୋଜି ତୋ ଅନୁରୂପ ପାତ୍ର ପାଇଲି ନାହିଁ ! ଏବେ ତୋତେ ଅନୁମତି ଦେଉଛି, ତୁ ଯାଇ ଦେଶ ନଗର-ମାନ ପରିଭ୍ରମଣ କରି ଜଣ ଉଜ୍ଜ୍ୱଳନିର୍ବିଶେଷରେ ଯାହା କଣ୍ଠରେ ବରଣମାଳ ଦେବୁ, ମୁଁ ତାହା ସହିତ ତତେ ବିବାହ ଦେବି ।" ସାବିତ୍ରୀ ସ୍ୱଭାବତଃ ଲଜ୍ଜାଶୀଳା, କିନ୍ତୁ ପିତୃଆଜ୍ଞା ଲଙ୍ଘନ କରନ୍ତେ କିପରି ? ଅନନ୍ୟୋପାୟ ହୋଇ ଦେଶ ଭ୍ରମଣ କଲା ପରେ ଏକ ତପୋବନରେ ପ୍ରବେଶ କଲେ । ସନ୍ଧ୍ୟା ସମୟରେ ଋଷି ଯୁବକମାନେ ଏକାଠି ବସି ବେଦ ମନ୍ତ୍ର ପାଠ କରୁଥିଲେ । ସାବିତ୍ରୀ ସେଠାରୁ ଟିକିଏ ଦୂରରେ ବସି ମନ୍ତ୍ରପାଠ ଶୁଣିଲା ବେଳେ ତାଙ୍କ ଆଖି ସତ୍ୟବାନଙ୍କ ଉପରେ ପଡ଼ିଲା । ସତ୍ୟବାନ ପରମ ସୁନ୍ଦର ପୁରୁଷ ଏବଂ ସର୍ବଗୁଣସମ୍ପନ୍ନ । ସାବିତ୍ରୀଙ୍କ ଆଖି ସତ୍ୟବାନଙ୍କ ଉପରେ ଟିକେ ଲାଗି ରହିଲା ଏବଂ ସାବିତ୍ରୀ ମନେ ମନେ ତାଙ୍କୁ ବରଣ କଲେ । ପରଦିନ ପ୍ରାତଃ-କାଳରେ ରାଜଧାନୀକୁ ଫେରି ଆସିଲେ ଏବଂ ମନ୍ତ୍ରୀ ସମସ୍ତ ଖବର ରାଜାଙ୍କ ସମ୍ମୁଖରେ ଜଣାଇଲେ । ରାଜା କନ୍ୟାଙ୍କ ପ୍ରସ୍ତାବ ଶୁଣି ଆନନ୍ଦିତ ହେଲେ ।

ଇତି ମଧ୍ୟରେ ନାରଦ ମୁନି ଉପସ୍ଥିତ । ନାରଦଙ୍କ ବ୍ୟବସାୟ ଯା କଥା ତା ଆଗରେ କହି କଳି ଲଗାଇ ଦେଇ ମଜା ଦେଖିବା । ଗୋଟିଏ କଥା କରିବାକୁ ବସିଛ, ହଠାତ୍ ନାରଦ ପ୍ରବେଶ ହୋଇ କହିବେ ଯେ ଏ କଥା ହେବ ନାହିଁ । ନାରଦଙ୍କ ଉଦ୍ଦେଶ୍ୟ ଭଲ, ମାତ୍ର ସାଧାରଣ ଲୋକେ ବୁଝିବେ ବିପରୀତ । ଲୋକେ ଜାଣନ୍ତି ବାଟରେ କଣ୍ଟା ପୋତିବା ଯାହା, ଭଲ ପ୍ରସ୍ତାବରେ ବିଘ୍ନ ଘଟାଇବା ତାହା । ନାରଦ ମହାତ୍ମା-

ସବୁ କାର୍ଯ୍ୟରେ ଗୋଟିଏ "କିନ୍ତୁ" ଲଗାଇ ଦେଇ ବସନ୍ତି । ନାରଦ କହିଲେ, "ସାବିତ୍ରୀ ସତ୍ୟବାନଙ୍କୁ ବରଣ କରିଛନ୍ତି ସତ, କିନ୍ତୁ ସତ୍ୟବାନ ଅଳ୍ପାୟୁ । ଆଜିଠାରୁ ଏକ ବର୍ଷ ମଧ୍ୟରେ ତାଙ୍କର ମୃତ୍ୟୁ ହେବ ।"

ପିତା ଏ କଥା ଶୁଣି ବଡ଼ ଦୁଃଖିତ ହେଲେ । କେଉଁ ପିତା ଇଚ୍ଛା କରିବ ଯେ, ତାର କନ୍ୟା ବର୍ଷକ ପରେ ବିଧବା ହେଉ । ମାତାଙ୍କ ଦୁଃଖ ତତୋଽଧିକ । ରାଜ ମନ୍ତ୍ରୀ ପ୍ରଜା ସାଧାରଣ ଯେ ଶୁଣିଲା ସେ ଏ କାର୍ଯ୍ୟରେ ଅମତ ପ୍ରକାଶ କଲା, କିନ୍ତୁ ସାବିତ୍ରୀ ସେ କଥା ଶୁଣିଲେ ନାହିଁ । ସେ ଉତ୍ତର କଲେ, "ଏ କିପରି କଥା, ମୁଁ ଯେତେବେଳେ ମନେ ମନେ ତାଙ୍କୁ ପତିତ୍ୱରେ ବରଣ କରି ସାରିଲିଣି, ମୁଁ ତ ଆଉ ଅନ୍ୟ ପତି ଗ୍ରହଣ କରି ପାରିବି ନାହିଁ । ସତ୍ୟବାନ ଅଳ୍ପାୟୁ ହୁଅନ୍ତୁ ବା ଦୀର୍ଘାୟୁ ହୁଅନ୍ତୁ ସେ ମୋର ପତି, ସେ ମୋର ଦେବତା, ସେ ମୋର ପୂଜ୍ୟ । ହିନ୍ଦୁରମଣୀ ଥରେ ଜଣକୁ ପତିତ୍ୱରେ ବରଣ କଲେ ଅନ୍ୟ ପତି ଗ୍ରହଣ ତା ପକ୍ଷରେ ଘୋର ନିନ୍ଦା, କଳଙ୍କ ଓ ଅଧର୍ମର ବିଷୟ ! ପିତା, ଅପରାଧ କ୍ଷମା କରନ୍ତୁ !" ଏ ଉତ୍ତର ଶୁଣି ସମସ୍ତେ ନିରୁତ୍ତର ହେଲେ । ସତ୍ୟବାନ ସାବିତ୍ରୀଙ୍କ ପାଣି ଗ୍ରହଣ କଲେ ଏବଂ ସାବିତ୍ରୀ ତପୋବନରେ ଯାଇ ସତ୍ୟବାନଙ୍କ ସହିତ ବାସ କଲେ । ସାବିତ୍ରୀ ଆପଣା କର୍ତ୍ତବ୍ୟ କାର୍ଯ୍ୟଗୁଡ଼ିକ ଉତ୍ତମରୂପେ ସମ୍ପାଦନ କରି ଶାଶୂ, ଶଶୁର, ପତି ଓ ଅନ୍ୟାନ୍ୟ ଗୁରୁଜନମାନଙ୍କର ପ୍ରିୟପାତ୍ରୀ ହେଲେ । ରାଜକନ୍ୟା ଆଜନ୍ମସୁଖୀ; ମାତ୍ର ଶାଶୂଘରକୁ ଯାଇ ସାବିତ୍ରୀ ପିତୃଗୃହ କଥା ପାସୋରି ପକାଇଲେ । ଶଶୁର ଘରର ଉପଯୋଗୀ କାର୍ଯ୍ୟ କରି ସମସ୍ତଙ୍କର ସ୍ନେହର ପାତ୍ରୀ ହେଲେ । ଏହିପରି କିଛିକାଳ ଗଲା

ବର୍ଷକ ଆସି ପୂରିଲା, ଦିନେ ମାତ୍ର ବାକିଅଛି । ସାବିତ୍ରୀ ନିର୍ଦ୍ଦିଷ୍ଟ ଦିନ ପୂର୍ବରୁ ଆପଣା ଗୃହକାର୍ଯ୍ୟ ଶେଷ କରି ନିଷ୍ଠା ଭାବରେ ଅନଶନବ୍ରତ କରି ଇଷ୍ଟ ଦେବତାଙ୍କୁ ଆରାଧନା କରୁଥିଲେ । ଯେଉଁ ଦିନ ଶେଷ ଦିନ, ସେ ଦିନ ସତ୍ୟବାନ କାଠ ହାଣିବାକୁ ବନକୁ ଗଲେ, ସାବିତ୍ରୀ ମଧ୍ୟ ଶାଶୁ ଶଶୁରଙ୍କ ଅନୁମତି ନେଇ ସ୍ୱାମୀଙ୍କ ସଙ୍ଗରେ ଗଲେ । ବନ ମଧ୍ୟରେ ପ୍ରବେଶ କରି କାଠ ହାଣୁଥିବା ବେଳେ କାଳ ଆସି ଦେଖାଗଲା । ସତ୍ୟବାନଙ୍କ ହସ୍ତରୁ କୁରାଢ଼ି ଖସି ପଡ଼ିଲା । ତାଙ୍କୁ ଚତୁର୍ଦ୍ଦିଗ ଅନ୍ଧକାରମୟ ଦେଖାଗଲା । ସତ୍ୟବାନ ବୃକ୍ଷରୁ ଓହ୍ଲାଇ ଆସିଲେ ଏବଂ ସାବିତ୍ରୀଙ୍କ ଜାନୁପରେ ମସ୍ତକ ଦେଇ ହତଜ୍ଞାନ ହୋଇଲେ । ସାବିତ୍ରୀ ଜାଣି ପାରିଲେ ଯେ ଅନ୍ତିମ କାଳଗ୍ରାସରେ ସ୍ୱାମୀ ପତିତ ହୋଇଲେ ।

କେତେକ୍ଷଣ ପରେ ଯମଦୂତମାନେ ଆସି ସତ୍ୟବାନଙ୍କୁ ନେବାକୁ ଉଦ୍ୟତ, ମାତ୍ର ଦେଖିଲେ ଯେ ସତୀକୋଳରେ ସତ୍ୟବାନଙ୍କ ମସ୍ତକ ଅଛି । ସତୀଙ୍କୁ ସ୍ପର୍ଶ କରି ସତ୍ୟବାନଙ୍କୁ ବାନ୍ଧି ନେବାଲାଗି ସାହସ କଲେ ନାହିଁ, ଫେରି ଯାଇ ଯମରାଜାଙ୍କ ଆଗରେ ଗୁହାରି କଲେ । ଯମ ଶୁଣି ସ୍ୱୟଂ ବିରାଜମାନ ହୋଇଲେ । ସାବିତ୍ରୀଙ୍କ ନିକଟରେ ପ୍ରବେଶ କରି ସତ୍ୟବାନଙ୍କୁ ଛାଡ଼ିଦେବାକୁ କହିଲେ । ସାବିତ୍ରୀ ସତ୍ୟବାନଙ୍କୁ ଛାଡ଼ିଦେଲେ । ଯମ ସତ୍ୟବାନଙ୍କୁ ବନ୍ଧନ କରି ଚାଲିଲେ ସାବିତ୍ରୀ ମଧ୍ୟ ତାଙ୍କର ପଶ୍ଚାଦ୍ଧାବନ କଲେ । ଯମ କିଛି ଦୂର ଯାଇ ପଛରେ ସାବିତ୍ରୀଙ୍କୁ ଦେଖି ପ୍ରଶ୍ନ କଲେ, "ମା, ତମେ କାହିଁକି ଆସୁଛ ?" ସାବିତ୍ରୀ ଉତ୍ତର ଦେଲେ, "ସତୀ ପତି ବ୍ୟତୀତ ରହିପାରେ ନାହିଁ । ଆପଣ ମୋ ପତିଙ୍କୁ ନେଇ

ଯାଉଛନ୍ତି । ମୁଁ ଏକାକିନୀ ହୋଇ ରହିବ କପରି ? ମୁଁ ପତିଙ୍କ ସଙ୍ଗେ ଯିବି ।" ଯମ ଶୁଣି ଅବାକ୍ ! ଏ ତ ସାମାନ୍ୟ ସ୍ତ୍ରୀ ନୁହେଁ, ଏ କିଏ ବିଧି ବିଧାନ ଲଙ୍ଘନ କରିବ ? ସାବିତ୍ରୀଙ୍କୁ ଫେରି ଯିବାକୁ ଅନୁରୋଧ କଲେ, ମାତ୍ର କିଛି ଫଳ ହେଲା ନାହିଁ । ଶେଷରେ ଯମ କହିଲେ, "ମା ! ତୁମେ କି ବର ମାଗୁଛ ମାଗ, ମୁଁ ଦେବି, କେବଳ ସତ୍ୟବାନଙ୍କୁ ଦେଇ ପାରିବି ନାହିଁ ।"

ସାବିତ୍ରୀ କହିଲେ, "ମୋ ଶାଶୁ ଶ୍ୱଶୁର ଅନ୍ଧ, ସେମାନେ ଚକ୍ଷୁ ପାଆନ୍ତୁ, ମୋ ଗର୍ଭରେ ପୁତ୍ର ଜାତ ହୋଇ କୁଳ ରକ୍ଷା କରିବ ଏବଂ ଧନ ସମ୍ପତ୍ତି ବୃଦ୍ଧି ହେବ ।" ଯମ ସାବିତ୍ରୀଙ୍କ ପଶ୍ଚାଦ୍ଧାବନ ଦେଖି ଭାବିଲେ । ମାନବ ସ୍ଥୁଳ ଶରୀରରେ ଯମପୁରକୁ ଗଲେ ବିଧି ବିଧାନ ରହିବ ନାହିଁ, ଏହି ଚିନ୍ତାରେ ଯମ ବ୍ୟାକୁଳ । କୌଣସି ମତେ ସାବିତ୍ରୀଙ୍କ ଠାରୁ ନିସ୍ତାର ପାଇଲେ ହେଲା ! ସୁତରାଂ ସାବିତ୍ରୀଙ୍କ ପ୍ରାର୍ଥିତ ବର ସବୁକୁ ତଥାସ୍ତୁ ବୋଲି କହି ଅଗ୍ରସର ହେଲେ । କିଛି ଦୂର ଯାଇ ପଛକୁ ଗୁହିଁ ଦେଖିଲେ— ସାବିତ୍ରୀ ଯାଇ ନାହାନ୍ତି, ପଛେ ପଛେ ଆସୁଛନ୍ତି । ଏଥର ଯମ ବିରକ୍ତ ହୋଇ ପ୍ରଶ୍ନ କଲେ "ମା ! ତତେ ବର ଦେଲି, ତୁ ପୁଣି କାହିଁକି ମୋ ପଛେ ପଛେ ଆସୁଛୁ ?" ସାବିତ୍ରୀ ଏଥର ଦମ୍ଭ ସହିତ ଉତ୍ତର ଦେଲେ, ମହାଶୟ, ଆପଣ ବିଚାରପତି ହୋଇ କିପରି ଏପରି ଆଦେଶ କରୁଛନ୍ତି ? ଆପଣ ବର ଦେଲେ ଯେ ମୋ ଗର୍ଭରୁ ପୁତ୍ର ଜାତହୋଇ ବଂଶ ରକ୍ଷା କରିବ । ଆପଣ ତ ମୋ ପତିଙ୍କି ନେଇଗଲେ, ତେବେ ସେ ବରର ଫଳ ପ୍ରାପ୍ତି କିପରି ହେବ ? ଯମ ବିଷମ ସମସ୍ୟାରେ ପଡ଼ିଲେ । ଦେଖିଲେ

ସତ୍ୟବାନଙ୍କୁ ଛାଡ଼ିଦେବା ବ୍ୟତୀତ ଅନ୍ୟ କିଛି ଉପାୟ ନାହିଁ । ବିଧି ବିଧାନ ଗଲା । ମନୁଷ୍ୟ ପୁଣି ଫେରି ଆସିଲା । ଯମ ନିରୁତ୍ତର ହୋଇ ଫେରିଗଲେ ! ସେହିଦିନୁ ସତୀ ସାବିତ୍ରୀଙ୍କ ମହିମା ଜଗତରେ ବିଖ୍ୟାତ ହେଲା, ସାବିତ୍ରୀଦେବୀ ଘରେ ଘରେ ପୂଜା ପାଇଲେ । ଜ୍ୟୈଷ୍ଠମାସ ଅମାବାସ୍ୟା ଦିନ ସାବିତ୍ରୀ ଜନ୍ମ-ଗ୍ରହଣ କରିଥିବାରୁ ସେହି ଅମାବାସ୍ୟାକୁ 'ସାବିତ୍ରୀ ଅମାବାସ୍ୟା' କହନ୍ତି ଏବଂ ସେ ଦିନ ମାଇପେ ସାବିତ୍ରୀ ବ୍ରତ କରନ୍ତି

ସ୍ୱାମୀ—କଥାଟି ତ ବେଶ ମନେ ରଖିଛ ଦେଖୁଛି । ଆଚ୍ଛା, ଏବେ କହିଲ, ଲୋକେ କାହିଁକି ସାବିତ୍ରୀ ବ୍ରତ କରନ୍ତି ?

ସ୍ତ୍ରୀ—ସାବିତ୍ରୀ ବ୍ରତ କଲେ ସଧବାମାନଙ୍କ କାଚ ବଳି ହୁଏ; ଶାଢ଼ୀ ସିନ୍ଦୂର କାଲେ କାଲେ ଥାଏ ।

ସ୍ୱାମୀ—ଆମ ଗାଁରେ ତମେ ଏକା ଏ ବ୍ରତ କରୁଛ, ନା ଆଉ କେହି କରେ ?

ସ୍ତ୍ରୀ—ଆମ ଗାଁର ଅନେକ ସଧବା ମାଇପେ ଏ ବ୍ରତ କରନ୍ତି ।

ସ୍ୱାମୀ—ଆଚ୍ଛା, କେତେ ଜଣଙ୍କ ଶାଢ଼ୀ ସିନ୍ଦୂର ଶଙ୍ଖା କାଲେ କାଲେ ରହିଛି କହିଲ ? ଆମ ଗାଁରେ ତେବେ ଆଉ କେହି ବିଧବା ନାହାନ୍ତି ପରା ?

ସ୍ତ୍ରୀ—ବିଧବା ନ ଥାନ୍ତେ କାହିଁକି ମ ? କେତେ ବିଧବା ଅଛନ୍ତି ।

ସ୍ୱାମୀ—ଏମାନେ ସାବିତ୍ରୀବ୍ରତ କରୁଥିଲେ ଠିକ ?

ସ୍ତ୍ରୀ—କରୁ ନ ଥିଲେ କଣ ? ସମସ୍ତେ ତ ବ୍ରତ କରନ୍ତି, ସେମାନେ କଣ ଗାଁ ବାହାରେ ?

ସ୍ୱାମୀ—ତେବେ ବ୍ରତକରି ଫଳ ହେଲା କଣ ? ଶାଢ଼ୀ ଶଙ୍ଖା ସିନ୍ଦୂର କଣ ରହିଲା ? ତେବେ ଏଥିରୁ ଜଣା ଯାଉଛି ଯେ, କେବଳ ବ୍ରତ କଲେ ହେବ ନାହିଁ କିମ୍ବା ସେ ଦିନ ବେଶି ଟଙ୍କା ଖର୍ଚ୍ଚ

କରି ପିଠା ପଣା କଲେ ହେବ, ନାହିଁ, ଏଥିରେ ଆଉ କିଛି କଥା ଅଛି ।

ସ୍ତ୍ରୀ—ଆଉ କି କଥା କହୁଛ ?

ସ୍ୱାମୀ—ବ୍ରତ କହିବା ଅର୍ଥ କଣ ?

ସ୍ତ୍ରୀ—ବ୍ରତ ତ କରନ୍ତି, ମୁଁ ଆଉ କିଛି ବେଶୀ ଜାଣେ ନାହିଁ ।

ସ୍ୱାମୀ—ବ୍ରତର ଅର୍ଥ ପ୍ରତିଜ୍ଞା । ଯେ ଯେଉଁ ବ୍ରତ କରେ ସେ ପ୍ରତିଜ୍ଞା କରେ ଯେ, ସେ ସେହିପରି କରିବ ଅର୍ଥାତ୍ ସାବିତ୍ରୀବ୍ରତ କରିବା ଅର୍ଥ ସାବିତ୍ରୀଙ୍କ ପରି ପତିବ୍ରତା ହେବାଲାଗି ପ୍ରତିଜ୍ଞା କରିବା । ସାବିତ୍ରୀଙ୍କ ପରି ପତିବ୍ରତା ହୋଇ ନ ପାରିଲେ ସାବିତ୍ରୀ ଯେ ଫଳ ପାଇଲେ ସେ ଫଳ ଅନ୍ୟଲୋକ ପାଇବ କିପରି ? ପୁଣି ଆଉ ଗୋଟିଏ କଥା ଶୁଣ, ଅଜ୍ଞାନକୃତ ପାପର କ୍ଷମା ହୋଇପାରେ ମାତ୍ର ଜ୍ଞାନକୃତ ପାପର କ୍ଷମା ନାହିଁ । ସାବିତ୍ରୀ ବ୍ରତ କରି ସାବିତ୍ରୀଙ୍କ ପରି ଆଚରଣ ନ କରିବା ମହାପାପ, ବରଂ କୌଣସି ବ୍ରତ ନ କରି କିଛି ଦୋଷକରି ପକାଇଲେ କ୍ଷମା ହୋଇପାରେ । ଯେ ଯେପରି କାର୍ଯ୍ୟ କରିବାକୁ ବ୍ରତ ବା ନିୟମ କରିବ ସେପରି କାର୍ଯ୍ୟ କରି ନ ପାରିଲେ ମହାପାପ ହୁଏ ଏବଂ ଶେଷରେ ଲୋକ ନରକଗାମୀ ହୁଏ ।

ସ୍ତ୍ରୀ—ସାବିତ୍ରୀଙ୍କ ପରି ଆମେମାନେ ଆଉ କଣ କରିବୁ ?

ସ୍ୱାମୀ—ଏ କଥାଟିରେ ତ ଅନେକ ମର୍ମ ଅଛି । ସାବିତ୍ରୀ କଣ କରିଥିଲେ, ତାହା ଗୋଟି ଗୋଟି କରି ବୁଝ । ପ୍ରଥମ କଥା ଦେଖ, ସାବିତ୍ରୀଙ୍କର ମନ କେତେ ଦୂର ଠାଣ ଏବଂ ଧର୍ମରେ ତାଙ୍କର କିପରି ଅଟଳ ବିଶ୍ୱାସ । ଯାହାଙ୍କୁ ସେ ବରଣ କରିବେ, ଯେ ତାଙ୍କ ଧନକାଳ ନେବ, ଯେ ତାଙ୍କ ଜୀବନର ପ୍ରଧାନ ଅଶ୍ରୟ, ଯେ ପ୍ରାଣାଧିକ ବନ୍ଧୁ, ଯେ ଆପଣାର ଜୀବନ ସ୍ୱର୍ବସ୍ୱ

ଏପରି ଯେ ପତି, ସେ ଅଳ୍ପାୟୁ ବୋଲି ଶୁଣିଲେ—ଶୁଣିଲେ ପୁଣି ଯେ ସେ ଲୋକଠାରୁ ନୁହେଁ—ସ୍ୱୟଂ ତ୍ରିକାଳଦର୍ଶୀ ନାରଦ ମହାମୁନିଙ୍କ ଶ୍ରୀମୁଖରୁ । ଶୁଣିବାବେଳକୁ ବିବାହ ହୋଇନାହିଁ, ହାତଗଣ୍ଠି ପଡ଼ି ନାହିଁ, କେବଳ ମନେ ମନେ ସତ୍ୟବାନଙ୍କୁ ବରଣ କରିବେ ବୋଲି ପ୍ରବନ୍ଧ କରିଥିଲେ, ସତ୍ୟବାନଙ୍କ ସହିତ କୌଣସି କଥାବାର୍ତ୍ତା ପର୍ଯ୍ୟନ୍ତ ହୋଇ ନ ଥିଲା, ଇଚ୍ଛା କରିଥିଲେ ଅନ୍ୟ ପତିର ଅନୁସନ୍ଧାନ କରି ପାରିଥାନ୍ତେ; ମାତ୍ର ସାବିତ୍ରୀ ଅପଣା ଧର୍ମବିଶ୍ୱାସ ବଳରେ ସେ ଇଚ୍ଛା ତ୍ୟାଗକରି ପାରିଲେ ନାହିଁ । ସେ ମନରେ ପାଞ୍ଚିଲେ ମୁଁ ସତ୍ୟବାନଙ୍କୁ ପତି କରିବି ବୋଲି ମନେ ମନେ ସଙ୍କଳ୍ପ କରି ସାରିଛି, ଏ ସଙ୍କଳ୍ପ ତ୍ୟାଗ କଲେ ମୋର ଧର୍ମ ହାନି ହେବ । ଯାହା ଅଦୃଷ୍ଟରେ ଥିବ ଘଟିବ, ଘଟୁ; କିନ୍ତୁ ମୁଁ ମୋ ସଂକଳ୍ପ ତ୍ୟାଗ କଲେ ମତେ ବ୍ୟଭିଚାରିଣୀ ଦୋଷ ଲାଗିପାରେ । ମୁଁ ଏବେଳପେ ମୋ ଇଚ୍ଛା ପରିବର୍ତ୍ତନ କଲେ ମତେ କେହି କିଛି କହିବେ ନାହିଁ ସତ, ମାତ୍ର ଧର୍ମଦ୍ୱାରରେ ପାର ହେବି କିପରି ? ଚିତ୍ରଗୁପ୍ତ ପାଞ୍ଜିରେ ଏ କଥା ଲେଖି ହୋଇ ସାରିବଣି । ସେ ତ ଆଉ ତା ପାଞ୍ଜି କାଟିବ ନାହିଁ । ବିଚାରବେଳେ ସେ ତ କଡ଼ାକର କଡ଼ା ଲଗାଇ ହିସାବ କରିବ । ମୁଁ ଯଦି ଆଜି ସତ୍ୟବାନଙ୍କୁ ପତିତ୍ୱରେ ବରଣ କରିବାକୁ ସଂକଳ୍ପ କରି ପୁନଶ୍ଚ ତ୍ୟାଗ କରିବି, ଲୋକେ ତ ମୋଠାରୁ ଏହି କଥା ଶିଖିବେ । ଥରେ ଜଣକୁ ପତିତ୍ୱରେ ବରଣ କରି ମନ ନ ମାନିଲେ ତାକୁ ଅକ୍ଳେଶରେ ତ୍ୟାଗ କରି ପାରିବେ ! ନା, ଏ କଥା ମୋର କେବେ କର୍ତ୍ତବ୍ୟ ନୁହେ ! ଏପରି ଦୃଢ଼, ସାହସ, ଧର୍ମବୁଦ୍ଧି କେତେ ଜଣ ସ୍ତ୍ରୀଲୋକଙ୍କଠାରେ ଦେଖାଯାଏ ? ଏପରି ଅଚଳ ଅଟଳ ପତିଭକ୍ତି କେତେ ଜଣଙ୍କର

ଅଛି ? କେବଳ ମୁହଁରେ କହିଲେ ହେବ ନାହିଁ, ହୃଦୟରେ ସେହିପରି ବିଶ୍ୱାସ ଥିବା ଆବଶ୍ୟକ ଏବଂ ବିଶ୍ୱାସ ଅନୁସାରେ କାର୍ଯ୍ୟ କରିବା ଆବଶ୍ୟକ । ଦ୍ୱିତୀୟ କଥା ଦେଖ, ଯମସହିତ ଯେ କଥାବାର୍ତ୍ତା ! ସାବିତ୍ରୀଙ୍କ ଯୁକ୍ତି ତର୍କ ଶୁଣି ପାଷାଣ ମଧ୍ୟ ତରଳି ଯାଇଥାନ୍ତା, ଯମ କଥା ଅଧିକ କଣ ? ପତି ବ୍ୟତୀତ ସତୀର ଜୀବନ ଧାରଣ କରିବା ଅସମ୍ଭବ, ଏ କଥା ସାବିତ୍ରୀଙ୍କର ପୂର୍ଣ୍ଣ ବିଶ୍ୱାସ । ସତ୍ୟବାନ ଯମପୁରକୁ ଯିବେ, ମୁଁ ଇହଧାମରେ ରହିବି କିପରି ! ଏ କଥା ତ କେବେ ହୋଇ ନ ପାରେ ! ସ୍ୱାମୀ ସ୍ତ୍ରୀର ଅର୍ଦ୍ଧାଙ୍ଗ । ବିବାହର ପରେ ସ୍ତ୍ରୀ ଓ ସ୍ୱାମୀଙ୍କର ଏକ ଶରୀର ହୋଇଯାଏ । ବୈବାହିକ ଧର୍ମ ସମ୍ବନ୍ଧରେ ଅବଦ୍ଧ ହେଲେ ସ୍ତ୍ରୀପୁରୁଷର ଭିନ୍ନ ଭିନ୍ନ ବ୍ୟକ୍ତିତ୍ୱ ଲୋପ ହୋଇ ଏକ ମିଶ୍ରିତ ଅଚ୍ଛେଦ୍ୟ ସମ୍ବନ୍ଧ ଜାତ ହୁଏ, ଏହାହିଁ ତ ହିନ୍ଦୁମାନଙ୍କର ଧର୍ମ । ସେ ହିନ୍ଦୁ ରମଣୀ; ହିନ୍ଦୁ ଶାସ୍ତ୍ରାନୁସାରେ ସତ୍ୟବାନଙ୍କୁ ପତି ବୋଲି ସ୍ୱୀକାର କରିଛନ୍ତି—ଏ ସମ୍ବନ୍ଧ ତ ଛିଣ୍ଡିବାର ନୁହେଁ । ସତ୍ୟବାନ ଯିବେ, ମୁଁ କିପରି ରହିବି ! ଏହିପରି ନିଷ୍ଠା ବିଶ୍ୱାସ ସହିତ ଯମ ସହିତ ଯୁକ୍ତି ତର୍କ କଲେ । ତାଙ୍କର ମୁହଁରେ ଗୋଟିଏ କଥା ପେଟରେ ଗୋଟିଏ କଥା ନ ଥିଲା, ତାଙ୍କ ଭିତର ବାହାର ସମାନ ! ଏପରି ଯେଉଁ ସ୍ତ୍ରୀ ଲୋକର ବିଶ୍ୱାସ, ତା ପ୍ରତି ଅସାଧ୍ୟ କଣ ? ଯମର କି ସାଧ୍ୟ, ସତୀ କଥା ପ୍ରତି କର୍ଣ୍ଣପାତ ନ କରିବ ? ଅଗତ୍ୟା ପରାସ୍ତ ହୋଇ ସତ୍ୟବାନଙ୍କୁ ଫେରାଇ ଦେଲା ।

ତୃତୀୟ କଥା ଦେଖ ଗୃହସ୍ଥ ଧର୍ମରେ ପ୍ରବେଶ କରି ସାବିତ୍ରୀ ଆଉ ନିଜକୁ ରାଜକନ୍ୟା ବୋଲି ମନେ କଲେ ନାହିଁ । ଅନେକ ସ୍ଥଳରେ ଦେଖାଯାଏ, ବଡ଼ଲୋକ ଝିଅମାନେ ଦୁଃଖୀ

ଶ୍ୱଶୁରାଳୟକୁ ଗଲେ କଥା କଥାକେ ଅପଣା ବାପଘର କଥା କହନ୍ତି । ଅପଣା ବଡ଼ପଣ ଦେଖାଇ ଶ୍ୱଶୁରାଳୟର ପରିବାର-ବର୍ଗଙ୍କୁ ତୁଚ୍ଛ ଜ୍ଞାନ କରନ୍ତି । ସ୍ୱହସ୍ତରେ ରନ୍ଧନ କରିବା, ଗୁରୁବର୍ଗଙ୍କ ସେବା କରିବାକୁ ହୀନ କାର୍ଯ୍ୟ ବୋଲି ମନେ କରନ୍ତି । ମାତ୍ର ସତୀଙ୍କ ଚରିତ୍ରରେ ଏ କଳଙ୍କ ନ ଥିଲା । ପାର୍ବତୀ ପିତାଙ୍କ ଘରେ ଘିଅ ଖାଇ ଦୁଧରେ ଆଚମିଥିଲେ, ମାତ୍ର ଶାଶୁଘରକୁ ଆସି ଗରିବଘର ବୋଲି ଘୃଣା କଲେ, ଅପଣାର ଅମୂଲ୍ୟ ଅଳଙ୍କାର କାଢ଼ି ଦେଲେ, ସାଧାରଣ ଯାହା ଲଗାଇବାର ଲଗାଇଲେ । ସ୍ୱହସ୍ତରେ ରନ୍ଧନ-କାର୍ଯ୍ୟ କରି ସ୍ୱାମୀ ଓ ଅନ୍ୟ ଶ୍ୱଶୁର ପ୍ରଭୃତିଙ୍କ ସେବା କଲେ ଓ ସ୍ୱହସ୍ତରେ ସମସ୍ତ ଗୃହକର୍ମ କରି ଗୃହ ଚଳାଇଲେ । ଏହିପରି ସମସ୍ତ କାର୍ଯ୍ୟ କରି ସେ ଗୃହର ସୌଭାଗ୍ୟ ହେଲେ । ବିନୟ ଅମୃତ ବଚନ ଯୋଗୁଁ ସମସ୍ତଙ୍କର ପ୍ରିୟ ହେଲେ । ପାର୍ବତୀ ସତ୍ୟବାଦିନୀ, ବିନୀତା, ନମ୍ରସ୍ୱଭାବା, ଲଜ୍ଜାଶୀଳା, ଦେବଦ୍ୱିଜଭକ୍ତିଯୁକ୍ତା, ପ୍ରିୟମ୍ବଦା ମୂଳତଃ ଲକ୍ଷ୍ମୀସ୍ୱରୂପିଣୀ ଓ ସର୍ବଗୁଣସମ୍ପନ୍ନା ।

ସୁତରାଂ ପାର୍ବତୀ ବ୍ରତ କଲେ ପାର୍ବତୀଙ୍କ ପରି ସକଳ ଗୁଣସମ୍ପନ୍ନା ହେବାକୁ ଅଭ୍ୟାସ କରିବା କର୍ତ୍ତବ୍ୟ । ବ୍ରତ ଧାରଣ କଲା ପରେ ଯେ ସେ ଅଭ୍ୟାସ ନ କରେ, ତାର ବ୍ରତ ନିଷ୍ଫଳ ହୁଏ ।

ସ୍ତ୍ରୀ—ଅଭ୍ୟାସ କଲେ କଣ ଲୋକର ପ୍ରକୃତି ବଦଳି ଯିବ ?

"ଯାହାର ଯେମନ୍ତ ସ୍ୱଭାବ ଗୁଚ୍ଛ ବଚନେ କିସ ହେବ ।"

ସ୍ୱାମୀ—ଏ କଥା ତମର ବୁଝିବାର ଭୁଲ । ଚେଷ୍ଟାର ଅସାଧ୍ୟ କିଛି ନାହିଁ । ଯାହାର ମନ ଯେଉଁ ତାହାର ପ୍ରବୃତ୍ତି ସେତେ । "ମନ ମୋହର କାଳ ଗୁରୁ ଉଦ୍ଧବ କେତେହେଁ ପଚାରୁ ?" ମନୁଷ୍ୟ

ଯେଉଁ କାର୍ଯ୍ୟ କରିବାକୁ ମନ କରିବ, ସଂକଳ୍ପ କରିବ, ସେ ଅବଶ୍ୟ ତାହା କରି ପାରିବ । ସଂକଳ୍ପର ଅସାଧ୍ୟ କିଛି ନାହିଁ । ନିଷ୍ଠା ସହିତ ସଂକଳ୍ପ କରିବା ଆବଶ୍ୟକ । କଥା ଅଛି, ଅଭ୍ୟାସ ଦ୍ୱିତୀୟ ପ୍ରକୃତି । ମନୁଷ୍ୟ ସନ୍ତଙ୍କ କଲେ ସାଧୁ ହୁଏ, ମାତ୍ର ସେହି ମନୁଷ୍ୟ ଜଙ୍ଗଲରେ ରହିଲେ ପଶୁ ହୋଇଯାଏ । ଅଭ୍ୟାସଦ୍ୱାରା ପ୍ରକୃତି ବଦଳି ଯିବ. ସାଧନାରୁ ସିଦ୍ଧି ହୁଏ । କଠୋର ସାଧନା କଲେ ମନୁଷ୍ୟ ଅସାଧ୍ୟ ସାଧନ କରି ପକାଏ । ଯୋଗୀମାନେ ତପସ୍ୟା କରନ୍ତି କାହିଁକି ? ପିଲେ ସ୍କୁଲରେ ପାଠ ପଢ଼ନ୍ତି କାହିଁକି, ଯାହାଠି ଯାହା ଥିବ ତା ତ ମନକୁ ଫୁଟି ବାହାରିବ, ତପସ୍ୟା ପ୍ରଭୃତିର ଆବଶ୍ୟକତା କଣ ? ଏ ସବୁ ଅଭ୍ୟାସ ଓ ସାଧନା ଦ୍ୱାରା ବାଞ୍ଛିତ ଫଳ ମିଳିବ ବୋଲି ଲୋକେ ଯତ୍ନ କରନ୍ତି, ଚେଷ୍ଟା କରନ୍ତି ।

ସ୍ତ୍ରୀ—ମନକୁ ଆୟତ୍ତ କରିବା କଣ ସହଜ କଥା ?

ସ୍ୱାମୀ—ସହଜ କଥା ଅବଶ୍ୟ ନୁହେଁ, ସହଜ ହୋଇଥିଲେ ମନୁଷ୍ୟମାନେ ତ ଦେବତା ହୋଇଯାନ୍ତେ । କଷ୍ଟ କଥା ବୋଲି ଅଳ୍ପ ଲୋକେ କରିପାରନ୍ତି; ମାତ୍ର ଅଭ୍ୟାସକଲେ କଷ୍ଟକର ପଥ ସହଜ ହୋଇଯାଏ; ଆପଣା ମନକୁ ଠିକଣା ରଖି ପାରିଲେ ଲୋକ ଯାହା ଇଚ୍ଛା ତାହା କରି ପାରିବ । ମନଟା ବଡ଼ ଚଞ୍ଚଳ । ସାଧୁମାନେ ମନକୁ ଘୋଡ଼ା ସଙ୍ଗେ ତୁଳନା କରିଛନ୍ତି । ଲଗାମ ନ ଥିଲେ ଘୋଡ଼ା ଯେପରି ବାଟ ଅବାଟ ନ ମାନି ଏଆଡ଼େ ସେଆଡ଼େ ପଳାୟନ କରେ, ମନଟା ଠିକ୍ ସେହିପରି । ମନକୁ ଲଗାମ ଦେଇ ରଖି ନ ପାରିଲେ ମନ ସୁକାର୍ଯ୍ୟ କୁକାର୍ଯ୍ୟ ବାଛବିଚାର ନ କରି ଯାହା ଇଚ୍ଛା ତାହା କରିପକାଏ । ସୁତରାଂ ମନକୁ ସର୍ବଦା ଲଗାମ ଦେଇ ରଖିବା ଆବଶ୍ୟକ । ବ୍ରତ,

ପୂଜା, କୀର୍ତ୍ତନ, ଭଜନ, ସ୍ମରଣ ଇତ୍ୟାଦ ଯେଉଁ ସବୁ ଅନୁଷ୍ଠାନ କରାଯାଏ, ସେ ସମସ୍ତର ଉଦ୍ଦେଶ୍ୟ ମନକୁ ଅଯୃତ୍ତ କରିବା ଲାଗି । ଏ ସମସ୍ତ ଲଗାମ ସ୍ୱରୂପ କାର୍ଯ୍ୟ କରନ୍ତି । ମନ ବଡ଼ ଚଞ୍ଚଳ କ ନା ସହଜରେ ଲଗାମ ଦେଇ ହୁଏ ନାହିଁ; କିନ୍ତୁ ଚେଷ୍ଟା କରି ଥରେ ଦେଇପାରିଲେ ଆଉ ହଲଚଲ ହେବାର ଉପାୟ ନ ଥାଏ ।

ସ୍ତ୍ରୀ—ମନକୁ ଅଯୃତ୍ତ କଲେ କଣ ସବୁ କରି ପାରିବ ?

ସ୍ୱାମୀ—ନିଶ୍ଚୟ ! ଏଥିରେ ଆଉ ସନ୍ଦେହ ଅଛି ? କଥା ଅଛି ପରା, "ଏହି ମନ ଯେବେ ପ୍ରସନ୍ନ ହୁଅଇ ଦାଅଇ ଅଭୟ ବର, ଏହି ମନ ପୁଣି ପ୍ରସନ୍ନ ନ ହେଲେ କରୁଥାଏ ନାରଖାର ।" ଏ ମହାବାକ୍ୟ କଣ ମିଥ୍ୟା ବୋଲି ମନେ କରୁଛ ?

ସ୍ତ୍ରୀ—ନା, ମିଥ୍ୟା କାହିଁକି ? ଅମ୍ଭେମାନେ ଏତେ କଥା ବୁଝିବୁ କିପରି ?

ସ୍ୱାମୀ—ତା ସତ, ମାତ୍ର ବ୍ରତ କଲାବେଳେ ଏଗୁଡ଼ିକ ବୁଝିବା ଆବଶ୍ୟକ । ବ୍ରତ କରିବା ବଡ଼ କଠିନ କାର୍ଯ୍ୟ । କେବଳ ଗୁଡ଼ାଏ ପିଠା ପଣା କରି ଖାଇଯାଇ ବାଣ୍ଟିଲେ ବ୍ରତର ଉଦ୍ଦେଶ୍ୟ ସିଦ୍ଧ ହୁଏ ନାହିଁ । ଏ ସମସ୍ତ ବାହ୍ୟ ଉପକରଣ । ଅମ୍ଭେମାନେ କେବଳ ବାହାର ଆଡ଼ମ୍ବରଟାକୁ ବଡ଼ ମନେ କରୁଁ, ଭିତର କଥାଟାକୁ ଦୃଷ୍ଟି ଦେଉନାହୁଁ । ଆମ ଦେଶରେ ଯେତେଗୁଡ଼ାଏ ବ୍ରତ କରାଯାଏ, ସେ ପ୍ରତ୍ୟେକର ଗୋଟିଏ ମହତ୍ ଉଦ୍ଦେଶ୍ୟ ଅଛି । ବୁଝି ଶୁଝି କଲେ ବହୁତ ଉପକାର ହେବ । ସାବିତ୍ରୀବ୍ରତ କଲେ ସାବିତ୍ରୀଙ୍କ ପରି ସତୀ ସାଧ୍ୱୀ ହେବା ଆବଶ୍ୟକ । ସାବିତ୍ରୀ ବ୍ରତର ଅନ୍ୟ ନାମ "ସତୀବ୍ରତ" । ସତୀ ପତି ପାଇଁ ସବୁ ତ୍ୟାଗ କରି ପାରେ, ମାତ୍ର ପତିତ୍ୟାଗିନୀ

ହୋଇ ପାରିବ ନାହିଁ । ସତୀବ୍ରତ କିପରି କଠୋର ତାହାର ଗୋଟିଏ ଦୃଷ୍ଟାନ୍ତ ଶୁଣ ! ସଂସ୍କୃତରେ ପୂର୍ବକାଳରୁ ଗୋଟିଏ ଶ୍ଳୋକ ଅଛି—

ସୁତଂ ପତନ୍ତଂ ପ୍ରସମୀକ୍ଷ୍ୟପାବକେ
ନ ବୋଧୟାମାସ ପତିଂ ପତିବ୍ରତା ।
ଅଭୂତ୍ତଦାସ୍ୟ ବ୍ରତଭଙ୍ଗଶଙ୍କୟା
ହୁତାଶନ ଶ୍ଚନ୍ଦନ ପଙ୍କ ଶୀତଃ ।

ତମେ ବୋଧ ହୁଏ ବୁଝିପାରୁ ନ ଥିବ, ଶୁଣ—ସତୀ ସ୍ତ୍ରୀର ଜାନୁ ଉପରେ ମସ୍ତକ ଦେଇ ପତି ନିଦ୍ରିତ । ଏଣେ ପୁଅଟି ଚୁଲିରେ ପଡ଼ିଗଲା । ସତୀ କଣ କଲା ? ପୁଅକୁ ଚୁଲିରୁ କାଢ଼ି ଆଣିବାକୁ ଲଣ୍ଡଭଣ୍ଡ ହୋଇ ନ ଦଉଡ଼ି ସ୍ଥିର ଭାବରେ ବସି ରହିଲା । କାହିଁକି ? ଉଠିଗଲେ ପତିଙ୍କ ନିଦ୍ରାଭଙ୍ଗହେବ ଏବଂ କାଳେ ସତୀବ୍ରତ ଭଙ୍ଗ ହେବ । ପୁଅର ଦଶା କଣ ହେଲା ? ପୁଅ ପୋଡ଼ିଗଲା ନାହିଁ କାହିଁକି ? ସତୀର ନିଷ୍ଠା ବ୍ରତ ଦେଖି ଅଗ୍ନି ଚନ୍ଦନ ଓ ପଙ୍କ ପରି ଶୀତଳ ହୋଇଗଲେ । ପତିଭକ୍ତିର ଏହା ଜ୍ୱଳନ୍ତ ଉଦାହରଣ । ସତୀବ୍ରତ କେଡ଼େ କଠିନ, ଏଥିରୁ ବୁଝିପାରିବ । ସତୀର କିପରି ମାହାତ୍ମ୍ୟ, ତାହା ମଧ୍ୟ ଏଥିରୁ ଶିକ୍ଷା କରିବ । ଆଜି ଏତିକି ଥାଉ, ମୁଁ ଯାଉଛି ।

---

## ଅଷ୍ଟମ ପରିଚ୍ଛେଦ

ସ୍ୱାମୀ—ଆଜି ତ ଦେଖୁଛି ଆଉ ରକ୍ଷା ନାହିଁ । ଆଜି ଏପରି ତମ ତମ ହେଉଛ କାହିଁକି ମ ?

ସ୍ତ୍ରୀ—ତମ ତମ କଣ ହେଲ ମ ? ମୋ କଥାଗୁଡ଼ାକ ସବୁବେଳେ ତମକୁ ଅଡ଼ୁଆ ଲାଗେ; ମୁଁ ଅଜ ସମ ବାବୁଙ୍କ ଘରକୁ ଯିବ ପର ?

ସ୍ୱାମୀ—କାହିଁକି ?

ସ୍ତ୍ରୀ—ତାଙ୍କର ପୁଅ ବାହାଘର, ହାଣ୍ଡି ମଙ୍ଗୁଳିବାକୁ ମତେ ଡାକିଛନ୍ତି ।

ସ୍ୱାମୀ—ଏଥିକି ଏତେ ଚିନ୍ତା କାହିଁକି ? ସେ ତ ଡାକିଛନ୍ତି ଯିବ, ଏଥିଲାଗି ଏତେ ବିଚାର କଣ ?

ସ୍ତ୍ରୀ—ମୁଁ ଯାଉ ନାହିଁ ମ, ମୋ କପାଳରେ ବାହା ସେ କଥା ଲେଖି ନାହିଁ ! ଅମେ କେଉଁ କଥାରେ କାହା ସାଥିରେ ସର ଯେ, ଯାଇ ପାଞ୍ଚଜଣଙ୍କ ସଙ୍ଗେ ଜଣେ ହୋଇ ଠିଆ ହେବୁଁ ?

ସ୍ୱାମୀ—କାହିଁକି ତମର ତ ହାତ ଗୋଡ଼ ଆଖି କାନ ସବୁ ଅଛି, ମଣିଷଟି ତ ଗୋଟିଏ ଗୃହଲରେ ଗଢ଼ା—ଅଉ କେଉଁ କଥାରେ ଅଭାବ ?

ସ୍ତ୍ରୀ—ନାହିଁ, ଅଭାବ କଣ ! ମୋର ତ ଅଚଳାଚଳ ସମ୍ପତ୍ତି ମାଡ଼ି ଯାଉଛି, ଅମ୍ପୃ ଅଳଙ୍କାରରେ ଦେହ ପୋତି ହୋଇ ପଡ଼ୁଛି !

ସ୍ୱାମୀ—ଅଚ୍ଛା, ସମ ବାବୁଙ୍କ ଘରକୁ ଯିବା ଲାଗି ଏତେ ହିସାବ କାହିଁକି ଲେଖା ଯୋଖା ଲାଗିଛି, ମୁଁ କିଛି ବୁଝିପାରୁ ନାହିଁ ।

ସ୍ତ୍ରୀ—ସେ କଥା ବୁଝିବ କାହିଁକି ? ପାଞ୍ଚ ମାଇପେ ସେଠାକୁ ଅସିବେ ! କିଏ ପାଟ ପୀତାମ୍ବର ପିନ୍ଧିଥିବ, କିଏ ନାନା ପ୍ରକାର ଅମ୍ପୃ ଅଳଙ୍କାର ପିନ୍ଧିଥିବ, ମୋର ତ ନାକରେ ନିମକାଠି, ହାତରେ ହାତସୂତା ବନ୍ଧା ହୋଇଛି, ପିନ୍ଧିବାକୁ ଖଦି ଲୁଗା, ମୁଁ ସେମାନଙ୍କ ପାଖରେ ସାଙ୍ଗ ସବରା ହୋଇ କେଉଁଠି ଠିଆ ହୋଇଥିବ । ଏଥିରେ ଅପଣା ମନ ଅପଣାକୁ ଖାଇବ, ମତେ ଲାଜ ମାଡ଼ୁଛି, ମୁଁ ଯିବ ନାହିଁ ।"

ସ୍ୱାମୀ—ବୁଝାଗଲା କଥାଟା ଏତେ ନେଲକୁ । ଅଚ୍ଛା, ଏଥିକି ଉପାୟ କଣ ? ରାମବାବୁଙ୍କ ଘରଠାକୁ ତ ନ ଗଲେ ନ ଚଳେ ।

ସ୍ତ୍ରୀ—ତେବେ ଯାଅ, ତମ ଭାଇଙ୍କ ଘରୁ ମୋ ପାଇଁ ପାଞ୍ଚ ଖଣ୍ଡ ଅଳଙ୍କାର କିଛି ମାଗି ଆଣିବ । ମୁଁ ରାମବାବୁଙ୍କ ଘରୁ ଆସିଲେ, ତାଙ୍କ ଜିନିଷ ତାଙ୍କୁ ଦେଇ ଆସିବ ।

ସ୍ୱାମୀ—ବେଶ୍ ପରାମର୍ଶ ! ଅଚ୍ଛା ହଉ, ମୁଁ ଗଲି, ଯାଇ ଜିନିଷ ଆଣିଲି, ତମେ ପିନ୍ଧିକରି ଗଲ, ରାମବାବୁଙ୍କ ଘରେ ଆଉମାନଙ୍କ ସାମ୍ନାରେ ଆପଣା ବଡ଼ିମା ଦେଖାଇ ହୋଇ ଗୁଡ ଫୁଲାଇ ବାଟ ଚାଲିଲ । ଏସବୁ କଥା ହେଲା; କିନ୍ତୁ ରାମବାବୁଙ୍କ ସ୍ତ୍ରୀ ଯେବେ ତମକୁ ପଚାରିବେ, ହଇଗୋ, ଏ ପାଞ୍ଚ ଖଣ୍ଡ କେତେ ଟଙ୍କାରେ କିଣିଥିଲ, ତାର ଜବାବ କଣ ଦେବ କହିଲ ?

ସ୍ତ୍ରୀ—ମୁଁ କହିବି ଆମ ସାନ୍ତ କିଣି ରଖିଛନ୍ତି, କେତେ ଟଙ୍କାରେ ଆଣିଛନ୍ତି ସେ ଜାଣିଥିବେ, କହୁଥିଲେ ଠ୨୫ଙ୍କା ।

ସ୍ୱାମୀ—ଅଚ୍ଛା, ଯେବେ କେହି ପଚାରିବ, ହଇ ଗୋ, ଏତେ ଅଳଙ୍କାର କେଉଁ ଦିନ କଲ ମ, କଣ କହିବ ?

ସ୍ତ୍ରୀ—କହିବି ସାନ୍ତଙ୍କର ଦରମା ବଢ଼ିଲାଣି ଦିନୁ ଏ କେତେ ଖଣ୍ଡ ଅଳଙ୍କାର ଅଳ୍ପେ ଅଳ୍ପେ କରିଛନ୍ତି ।

ସ୍ୱାମୀ—ଯେବେ ପଚାରିବେ କେତେ ଦରମା ?

ସ୍ତ୍ରୀ—ଅଠଟଙ୍କା ପରା ତମର ଦରମା, ସେଇ କଥା ତ କହିବି, ଅଉ କଣ କହିବି ?

ସ୍ୱାମୀ—ଯେବେ ପଚାରିବେ ଅଠଟଙ୍କା ଦରମାରେ ଏତେ ଅଳଙ୍କାର କିପରି କଲ ମ ? ବୋଧହୁଏ ଉପୁରି ପଇସା ମିଳୁଥିବ ?

ସ୍ତ୍ରୀ—ମୁଁ କହିବି ଆମେ ମାଇପେ କଣ ସେ କଥା ବୁଝୁଁ, ଥିବ ଉପୁରି ଲାଭ ।

ସ୍ୱାମୀ—ବେଶ୍, ବୁଦ୍ଧିମତୀ ସ୍ତ୍ରୀ ନ ହେଲେ କି ଏପରି ଉତ୍ତର ଦେଇ ପାରିବ ?

ସ୍ତ୍ରୀ—କାହିଁକି ମ, ଏଥିରେ ପୁଣି ଦୋଷ କଣ ହେଲା ?

ସ୍ୱାମୀ—ଦୋଷ କଣ ? ଏ ଗୁଡ଼ାକ ତ ଗୁଣ !

ସ୍ତ୍ରୀ—ଏଥିରେ କଣ ଦୋଷ ଅଛି ମ, ଯାହାର ନାହିଁ ସେ ମାଗିଯାଚି କରି କାମ ଚଳାଉ ନାହିଁ ?

ସ୍ୱାମୀ—ମାଗିଯାଚି କରି ନେଇ କାମ ଚଳାଇବ, କିନ୍ତୁ ତାକୁ ନେଇଅଛି ଥୋଇଲା ବେଳକୁ କେତେ ମିଛ କହିବାକୁ ପଡ଼ିବ ବୁଝି ପାରୁଛ ? ପୂର୍ବରୁ ଆମ ଦେଶରେ ଯେଉଁ କଥା ଅଛି, ପରଲୁଗା ପିନ୍ଧି ଦାଣ୍ଡକୁ ଯାଏ, ଲୋକେ ପଚାରିଲେ ମୁଣ୍ଡ ଝୁଙ୍କାଉଥାଏ,—କଥାଟା ଅକ୍ଷରେ ଅକ୍ଷରେ ସତ ।

ସ୍ତ୍ରୀ—ଆଉ କଣ କହିବି ମୁଁ ମାଗି ଆଣିଛି ?

ସ୍ୱାମୀ—କହିଲେ ଦୋଷ କଣ ?

ସ୍ତ୍ରୀ—ଲାଜ ମାଡ଼ିବ । ଲୋକେ ଶୁଣିଲେ ଘୃଣା କରିବେ । ଗରିବ ବୋଲି ଅମାନ୍ୟ କରିବେ ।

ସ୍ୱାମୀ—ମିଛ କହିଲେ ଲୋକେ କଣ ପ୍ରଶଂସା କରିବେ ?

ସ୍ତ୍ରୀ—ସେମାନେ କଣ ଆମ ଘର ତଲାସ କରିବାକୁ ଆସିବେ । କାହା ଘରେ କିଏ କଣ କରୁଛି, ସେମାନେ ଏତେ କଥା ବୁଝିବେ କାହିଁକି ମ ?

ସ୍ୱାମୀ—ଆପଣାର ପ୍ରକୃତ ଅବସ୍ଥା ଗୋପନ କରି ଲୋକ କେତେଦିନ ଚଳିବ ? କଥା କେଉଁଠି ଲୁଚି ରହେ ? ତମେ ଯାହା କରୁଛ ତାହା କଣ ଲୋକଙ୍କୁ ଅଜଣା ରହୁଛି ? ବିରାଡ଼ି ଆଖି ବୁଜି ଦୁଧ ପିଏ, ମନେ କରେ କେହି ଦେଖୁନାହିଁ, କିନ୍ତୁ ସଂସାର-ଯାକ କଣ ଆଖି ବୁଜିଥାନ୍ତି ?

ସ୍ତ୍ରୀ—ସଂସାରଯାକ କାହିଁକି ଅଖି ବୁଜନ୍ତେ ।

ସ୍ୱାମୀ—ତେବେ ତ ବୁଝି ପ ରୁଛ ପରଘରୁ ଜିନିଷ ମାଗିଆଣି ଆପଣା ବଡ଼ଲୋକ ଦେଖାଇବ, ମାନ କେତେବେଳେ ମିଛ ଅକାରଣରେ କହିବାକୁ ପଡ଼ିବ ?

ସ୍ତ୍ରୀ—ହଁ, ତା କହିବାକୁ ପଡ଼ିବ ।

ସ୍ୱାମୀ—ଆମେ ଯାହା ନୋହୁଁ ତାହା ଦେଖାଇବା କାହିଁକି । ଆମର ଯାହା ନାହିଁ, ତା ପରଠାରୁ ଅଣି ଏତେ ହଟହଟା ହେବା କାହିଁକି ?

ସ୍ତ୍ରୀ—ତେବେ ମୁଁ ଏବେ ନ ଗଲି ?

ସ୍ୱାମୀ—ନ ଯିବ କାହିଁକି ? ଆମର ପ୍ରକୃତ ଅବସ୍ଥା ଲୁଚାଇବାର କିଛି ଆବଶ୍ୟକ ନାହିଁ । ସତ୍ୟ କହିବା ପରମ ଧର୍ମ । ସତ୍ୟ କହିବା ବେଳେ ମଣିଷ ମନରେ ଦମ୍ଭ ସାହସ ଥାଏ, କିନ୍ତୁ ମିଥ୍ୟା କହିଲାବେଳେ ମନ ଚପିଯାଏ । ଆମେ ଗରିବ ହେବା ଭଲ, କେହି ଆମକୁ ମିଥ୍ୟାବାଦୀ ବୋଲି ନ କହନ୍ତୁ । ଆପଣାର ପ୍ରକୃତ ଅବସ୍ଥା ଗୋପନ କରି ମିଥ୍ୟା କହିବା ଅପେକ୍ଷା ସତ୍ୟ କହି ଆପଣାର ପ୍ରକୃତ ଅବସ୍ଥାର ପରିଚୟ ଦେବା ଭଲ । ଲୋକେ ଆମକୁ ଗରିବ ବୋଲି ଜାଣି ପାରନ୍ତି, ମାତ୍ର କହିବେ ଲୋକଟା ସତ୍ୟବାଦୀ । ଆଛା ତମେ ତ ଅନେକ ପୁରାଣ ପଢ଼ିଛ, ରାମାୟଣ ତ ପଢ଼ିଥିବ, ସତ୍ୟରକ୍ଷା କରିବା ଲାଗି ଲୋକେ କେତେ ସ୍ୱାର୍ଥ ତ୍ୟାଗ କରିଥିଲେ ଶୁଣିଥିବ ! ଆପଣାର ଅବସ୍ଥା ଗୋପନ କରି ମିଥ୍ୟା କହୁଥିବା ଲୋକର କେବେ ପ୍ରଶଂସା ହୋଇ ଥିବାର ଶୁଣିଛ ?

ସ୍ତ୍ରୀ—ନା, ଏପରି ଶୁଣି ନାହିଁ । ରାମାୟଣରେ କିଏ କଣ ସ୍ୱାର୍ଥ ତ୍ୟାଗ କରିଥିଲା କହିଲ ?

ସ୍ୱାମୀ—ରାମଚନ୍ଦ୍ର ରାଜପୁତ୍ର । ଘିଅ ଖାଇ ଦୁଧରେ ହାତ ଧୋଉଥିଲେ । ଉତ୍କୃଷ୍ଟ ହଂସତୂଲଶଯ୍ୟା ଉପରେ ଶୟନ କରୁଥିଲେ । ଚନ୍ଦ୍ରାତପ ନ ହେଲେ ନିଦ୍ରା ଯାଉ ନ ଥିଲେ; ଅଯୋଧ୍ୟାର ମହାରାଜାଙ୍କ ପୁତ୍ର, କେଉଁ କଥାର କି ଅଭାବ ଥିଲା ? ଧନ ଜନ ଗୋପ ଲକ୍ଷ୍ମୀ ପରିବେଷ୍ଟିତ ହୋଇ ମହାଆନନ୍ଦରେ କାଳ କଟାଉଥିଲେ । ସ୍ଥିର ହେଲା, ରାମଚନ୍ଦ୍ର ରାଜା ହେବେ । ଅଭିଷେକ ହେବାର ସମସ୍ତ ଆୟୋଜନ ଲାଗିଛି । ରାତ୍ରି ପ୍ରଭାତ ହେଲେ ରାମଚନ୍ଦ୍ର ରାଜସିଂହାସନରେ ବସି ରାଜା ହେବେ । ମାତା, ପତ୍ନୀ, ଆତ୍ମୀୟ, ସ୍ୱଜନ, ବନ୍ଧୁବାନ୍ଧବ, ପ୍ରଜାବର୍ଗ ପ୍ରଭୃତିଙ୍କ ମନରେ ଯେ କେତେ ଦୂର ଆନନ୍ଦ ହୋଇଥିଲା, ତାହା ସେମାନେ ଜାଣିଥିବେ । ମାତ୍ର ବିଧିବିଧାନକୁ କିଏ ଅନ୍ୟଥା କରି ପାରିବ ? ଦଶରଥ ମହାରାଜା କୈକେୟୀଙ୍କଠାରେ ପ୍ରତିଜ୍ଞା କରିଥିଲେ । ସେ ସତ୍ୟ କରିଥିଲେ ଯେ କୈକେୟୀ ଯେଉଁ ବେଳେ ଯେଉଁ ବର ମାଗିବେ ସେ ଦେବେ । ମନ୍ଥରାର ମନ୍ଦ ବୁଦ୍ଧି ହେତୁ କୈକେୟୀ ଏତିକିବେଳେ ବର ମାଗିଲେ "ରାମ ଚଉଦବର୍ଷ ବନବାସ ଯିବ, ଭରତ ରାଜା ହେବ ।" କି ଦାରୁଣ ମର୍ମଭେଦୀ କଥା ! ଅମୃତ ହାତରେ ଧରି ପାନ କରିବାକୁ ମୁହଁ ପାଖକୁ ନେଲାବେଳକୁ ବଜ୍ରପାତ ହେବା ପରି ଏକଥା ଘଟିଲା ! ସବୁ ଆନନ୍ଦଲହରୀ ମ୍ଳାନ ହୋଇଗଲା । ସମସ୍ତେ ନିରାନନ୍ଦସାଗରରେ ଭାସମାନ ହେଲେ, ରାଜ୍ୟରେ ହାହା ଧ୍ୱନି ଶୁଣାଗଲା । ସମସ୍ତେ କୈକେୟୀ ଓ ମନ୍ଥରାଙ୍କୁ ତିରସ୍କାର କରି ତୀବ୍ର ସମାଲୋଚନା କଲେ । ଦଶରଥ ଏ ବଜ୍ରସମାନ ସମ୍ବାଦ ଶୁଣି ମୂର୍ଚ୍ଛା ଗଲେ ! ରାମଚନ୍ଦ୍ର ମହାସଙ୍କଟ ପଥରେ ଦଣ୍ଡାୟମାନ । ଏକଆଡ଼େ ରାଜସିଂହାସନ, ଅନ୍ୟଆଡେ ଚତୁର୍ଦ୍ଦଶ ବର୍ଷ ବନ-

ଗମନ । ଅବାଳବୃଦ୍ଧବନିତା ରାମଚନ୍ଦ୍ରଙ୍କ ସପକ୍ଷ । ଏପରି ସ୍ଥଳରେ ଧାର୍ଯ୍ୟମାନ ହୋଇ ରାମଚନ୍ଦ୍ର କଣ କଲେ ? ଇଚ୍ଛା କରିଥିଲେ ରାମଚନ୍ଦ୍ର ସ୍ୱଚ୍ଛନ୍ଦରେ ଅଭିଷିକ୍ତ ହୋଇ ରାଜସିଂହାସନ ଅଳଂକୃତ କରି ମହା ସୁଖରେ କାଳାତିପାତ କରି ପାରିଥାନ୍ତେ । କିନ୍ତୁ ରାମଚନ୍ଦ୍ର ସେ ପ୍ରକୃତିର ଲୋକ ନୁହନ୍ତି । ରାମଚନ୍ଦ୍ର ଏତେବେଳେ ସତ୍ୟ ରକ୍ଷା ଓ ରାଜଭୋଗ ଉଭୟକୁ ତୁଳନା କରି ଦେଖିଲେ । ସ୍ଥିର କଲେ, ସତ୍ୟ ରକ୍ଷା କରିବାଠାରୁ ବଳି ଏ ସଂସାରରେ ମୂଲ୍ୟବାନ୍ ବସ୍ତୁ କିଛି ନାହିଁ । ରାଜବିଭବ କ୍ଷଣସ୍ଥାୟୀ ! ସତ୍ୟହିଁ ମନୁଷ୍ୟର ପରମ ଧର୍ମ । ଛାର ନଶ୍ୱର ସାଂସାରିକ ସୁଖ ଲାଗି ସତ୍ୟ ପ୍ରତି ଅମର୍ଯ୍ୟାଦା ପ୍ରଦର୍ଶନ କରିବା ମନୁଷ୍ୟ ପକ୍ଷରେ ଉଚିତ ନୁହେ । ସେ ସତ୍ୟ ରକ୍ଷା ନ କଲେ ପିତା ଅସତ୍ୟବାଦୀ ହୋଇ ନରକଗାମୀ ହେବେ । ସେ ପିତାଙ୍କ ଧର୍ମରକ୍ଷା ଅପେକ୍ଷା ଆପଣା ସୁଖକୁ ବେଶି ମୂଲ୍ୟବାନ ମନେ କଲେ ନାହିଁ । କୃତସଂକଳ୍ପ ହୋଇ ଜଟା ବଲ୍‌କଲ ଧାରଣ-ପୂର୍ବକ ବନବାସୀ ହେଲେ । ଇଚ୍ଛା କରିଥିଲେ ଶ୍ରୀରାମଚନ୍ଦ୍ର ବନରେ ମଧ୍ୟ ସୁଖ ଭୋଗ କରି ପାରିଥାନ୍ତେ, ଇଚ୍ଛା କରିଥିଲେ ବନରେ ରହି ରାଜ୍ୟରୁ ଧନ ସମ୍ପତ୍ତି ନେଇ ମହା ଆନନ୍ଦରେ କାଳ କଟାଇ ପାରିଥାନ୍ତେ, କିନ୍ତୁ ରାମଚନ୍ଦ୍ର ତାହା କଲେ ନାହିଁ । ସେ ମନେ କଲେ, ଯାହା ଅବସ୍ଥାକୁ ଯାହା ସାଜିବ ସେ ସେହିପରି ଚଳିବା ଆବଶ୍ୟକ, ତା ନ ହେଲେ କପଟ ଧର୍ମ ଆଚରଣ କରିବାକୁ ପଡ଼ିବ । ସେ ବନବାସୀ, ତାଙ୍କୁ ପ୍ରକୃତ ବନବାସୀ ପରି ରହିବାକୁ ହେବ । ସୁତରାଂ ଜଟା ବଲ୍‌କଲ ଧାରଣ କରି, ଏକବସ୍ତ୍ର ହୋଇ ଘରୁ ବାହାରି ଗଲେ । ବନ୍ୟ ଫଳମୂଳ ଓ ମୃଗୟାଲବ୍ଧ ଜୀବଦ୍ୱାରା ଉଦର ପୂରଣ କରି

କାଳ କାଟି ଥିଲେ । କିନ୍ତୁ କେବେ ମନରେ ଅସନ୍ତୁଷ୍ଟ ହୋଇ ନାହାନ୍ତି । ରାଜ୍ୟରେ ଥିଲେ ଯେପରି ସୁଖଭୋଗ କରିଥାନ୍ତେ ବନବାସ ବେଳେ ସେହିପରି ସୁଖୀ ଥିଲେ । ଥରେ ସୀତା ରାମଚନ୍ଦ୍ରଙ୍କୁ ପ୍ରଶ୍ନ କଲେ, "ନାଥ ! ଯଦି ପ୍ରଭୃତ ହୋଇଥିଲେ ଆମେମାନେ ରାଜସିଂହାସନରେ ବସିଥାନ୍ତେ, ମାନ ବାହାର କ ବଡ଼ମ୍ବନ, ଆମ୍ଭମାନଙ୍କୁ ଅଣି ଏ ବନ ମଧ୍ୟରେ ଛାଡ଼ିଦେଲା ।" ରାମଚନ୍ଦ୍ର ଉତ୍ତର ଦେଲେ, "ପ୍ରିୟେ ! ଚିନ୍ତା କରି, ରାଜ ସୁଖ ବନମୁଖ ଉଭୟ ମଧ୍ୟରେ କିଛି ପ୍ରଭେଦ ନାହିଁ । ଆମେମାନେ ସେଠାରେ ଯେପରି ଥିଲେଇଁ, ଏଠାରେ ଠିକ୍ ସେହିପରି ଅଛିଁ । ମନ ସୁଖ ଦୁଃଖର ହେତୁ—ମନେ କଲେ ସୁଖ, ମନେ କଲେ ଦୁଃଖ ।"

ରାମଚନ୍ଦ୍ର ସତ୍ୟ ରକ୍ଷା କରିଥିଲେ ବୋଲି ଆଜି ଦେବତା ସ୍ୱରୂପ ଗୃହେ ଗୃହେ ପୂଜା ପାଉଛନ୍ତି । ଆଜି ମାନବଙ୍କରେ ରାମଚନ୍ଦ୍ର ଦେବତା । ରାମଚନ୍ଦ୍ର ଯଦି କୈକେୟୀଙ୍କ କଠୋର ଆଜ୍ଞା ଶୁଣି ନା ମାନିଥାନ୍ତେ ପ୍ରଚଣ୍ଡ ରାଗ ଦେଖାଇ ତାଙ୍କୁ ମାରି ଧରି ତଡ଼ି ଦେଇ ସ୍ୱଚ୍ଛନ୍ଦରେ ରାଜ୍ୟ ଭୋଗ କରିଥାନ୍ତେ, ରାମଚନ୍ଦ୍ର ଆଜି ଅନ୍ୟ ଦେବତା ପରି ପୂଜା ପାଇ ନ ଥାନ୍ତେ । ଏଥିରୁ ତୁ ବୁଝି ପାରୁଥିବ ସତ୍ୟରେ ମାହାତ୍ମ୍ୟ କେତେ, ସତ୍ୟର ମର୍ଯ୍ୟାଦା କେତେ । ଏହିପରି ପୁରାଣରେ ଅସଂଖ୍ୟ ଦୃଷ୍ଟାନ୍ତ ଦେଖିବ । ସତ୍ୟ ରକ୍ଷା କରିବାକୁ କର୍ଣ୍ଣ ରାଜା ସ୍ୱହସ୍ତରେ ପୁଅର ମୁଣ୍ଡ କାଟି ଦେଲେ, ସତ୍ୟ ରକ୍ଷା କରିବା ଲାଗି ବଳି ସର୍ବସ୍ୱ ଦାନ କଲେ, ସତ୍ୟ ରକ୍ଷା କରିବା ଲାଗି ହରିଶ୍ଚନ୍ଦ୍ର ଚଣ୍ଡାଳ ଘରେ ଚାକରୀ କଲେ । ଏମାନେ ଏତେ କଥା କରି ପାରିଲେ, ଆମେମାନେ ସାମାନ୍ୟ ଅଳଙ୍କାର ଓ ଲୁଗାପଟା ନିମନ୍ତେ ଅଦ୍ଭୁତ ଦେଖାଇବା

ଲାଗି ମିଛ କହିବା ; ଲାଭ ତ କିଛି ନାହିଁ, କେବଳ କେତେକ ମାଇପେ କହିବେ ଓଃ, ଅମୁକ ମାଇପ କେତେ ଅଳଙ୍କାର ଲଗାଇଛି, ପାଟ ପିତାମ୍ବର ପିନ୍ଧିଛି ! ଧନ୍ୟ ତା ସ୍ୱାମୀ, ସ୍ତ୍ରୀକି ଗହଣାରେ ଘୋଡ଼ାଇ ଦେଇଛି ।' ଏହା ଛଡ଼ା ଆଉ କଣ ଅଛି ?

ସ୍ତ୍ରୀ—ସେହି କଥା ନୁହେଁ କଣ ? ଆଉ ଏଥିରେ ବେଶି କଣ ଅଛି ? ତେବେ ଲୋକେ ତ ପୁଣି ଏପରି ଚଳନ୍ତି ।

ସ୍ୱାମୀ—ଚଳନ୍ତି ନାହିଁ କଣ ? ତେବେ ଏଥିରେ କେତେ କଥା ଅଛି ବୁଝିଲ ତ ? ଯାହାର ଯାହା ପ୍ରକୃତ ଅବସ୍ଥା, ସେ ସେହିପରି ପଦାକୁ ଦେଖାଇବା ବାଞ୍ଛନୀୟ ।

ସ୍ତ୍ରୀ—ତା ଯାହା କହିଲ ସତ, କିନ୍ତୁ ପାଞ୍ଚ ମାଇପଙ୍କ ମେଳରେ ଠିଆ ହେଲା ବେଳେ ମନଟା କିପରି ହୋଇଯାଏ ।

ସ୍ୱାମୀ—ମନଟାକୁ ସେପରି ହେବାକୁ ଦେବ କାହିଁକି ? ମନରେ ଏପରି ଯଦି ବିଶ୍ୱାସ ଥାଏ ଯେ ମୋର ଭଲ ଲୁଗା ନାହିଁ, ଅଳଙ୍କାର ପତ୍ର ନାହିଁ, ମୁଁ ଦୁଃଖୀ ସତ, କିନ୍ତୁ ମୁଁ ତ କାହାର କିଛି ଅନିଷ୍ଟ କରି ନାହିଁ, ଚୋରିନାରି କରି ନାହିଁ, ମିଛ କହି ନାହିଁ, ତେବେ ମୋର ଏମାନଙ୍କ ସହିତ ପ୍ରଭେଦ ନାହିଁ । ଈଶ୍ୱର ମନୁଷ୍ୟମାନଙ୍କୁ ଭିନ୍ନ ପ୍ରକୃତି ଦିଏ, ଆଉ ଅଳଙ୍କାର ତ ଦିଏ ନାହିଁ । ମୁଁ ଏମାନଙ୍କଠାରୁ ସାନ କାହିଁକି ? ସାନ ବଡ଼ ବିଚାର ତ କେବଳ ଟଙ୍କା କଉଡ଼ିରେ ନାହିଁ, ଗୁଣର ପାର୍ଥକ୍ୟ ଅନୁସାରେ ଲୋକ ସାନ ବଡ଼ ହୁଏ । ଅଚ୍ଛା, ତମେ ବିଦୁରର ଶାଗଭାଜି କଥା ଶୁଣିଛ ?

ସ୍ତ୍ରୀ—ନା, ଶୁଣିନାହିଁ, କହିଲ ଦେଖି ?

ସ୍ୱାମୀ—ଅଚ୍ଛା ଶୁଣ । ଶ୍ରୀକୃଷ୍ଣ, ଯାହାଙ୍କୁ ଆମେମାନେ ଠାକୁର ବୋଲି ପୂଜା କରୁ, ସେ ଦିନେ ଯୁଧିଷ୍ଠିରଙ୍କ ଗ୍ରାମକୁ ଯାଇଥିଲେ ।

ଦୁର୍ଯ୍ୟୋଧନ ଖୁବ୍ ବଡ଼ଲୋକ, ବଡ଼ରାଜା ବୋଲି ତା ମନରେ ଭାରି ଗର୍ବ । ତା ହସ୍ତରେ ଶଙ୍ଖନିଧି ପଦ୍ମନିଧି ଥାଏ, ଅର୍ଥାତ ସେ ଯେଉଁ ପଦାର୍ଥରେ ହାତ ଦେବ ସେ ବହୁମୂଲ୍ୟ ମଣି-ମୁକ୍ତାରେ ପରିଣତ ହୋଇଯିବ । ଦୁର୍ଯ୍ୟୋଧନର ପ୍ରତାପ ଚତୁର୍ଦ୍ଦଶ ଭୁବନରେ ପ୍ରକଟିତ । ଦୁର୍ଯ୍ୟୋଧନ ନାମ ଶୁଣି ଗର୍ଭିଣୀ ଗାଈ ବାଛ ଛାଡ଼ିଦେବ । ଏ ପ୍ରକାର ପ୍ରବଳ ପ୍ରତାପୀ ରାଜା ଘରେ ଖାଦ୍ୟ ପେୟ ସାମଗ୍ରୀର ଅଭାବ ନାହିଁ । ତା ଠାରୁ ଅଧିକ କିଏ ସଜ୍ଜନ ସତ୍କାର କରି ପାରିବ ? ସେ ଶ୍ରୀକୃଷ୍ଣଙ୍କୁ ତା ଗୃହରେ ଭୋଜନ କରାଇବାକୁ ନିମନ୍ତ୍ରଣ କଲା । କିନ୍ତୁ ଶ୍ରୀକୃଷ୍ଣ କଲେ କଣ ? ଶ୍ରୀକୃଷ୍ଣ ଯାଇ ଦୀନଦରିଦ୍ର ବିଦୁର ଘରେ ପଖାଳ ଭାତ, ଶାଗଖରଡ଼ା ଖାଇଲେ । ଏଥିରୁ ଲୋକେ କଣ ବୁଝିବେ ? ବିଦୁର ଅପେକ୍ଷା ଦୁର୍ଯ୍ୟୋଧନ କେଉଁ ଗୁଣରେ ଊଣା ଯେ ଶ୍ରୀକୃଷ୍ଣ ତା ଘର ଛାଡ଼ି ବିଦୁର ଘରକୁ ଯାଇ ପଖାଳଭାତ ଶାଗ ଖରଡ଼ା ଖାଇବାକୁ ସୁଖ ପାଇଲେ । ସୂକ୍ଷ୍ମାନୁସୂକ୍ଷ୍ମ ଭାବରେ ଦେଖିଲେ ଜଣାଯିବ ଯେ ବିଦୁର ଗୁଣୀ, ଦୁର୍ଯ୍ୟୋଧନ ଗୁଣସମୁଦ୍ରୀ ଏମନ । ବିଦୁର ଭକ୍ତ, ଚରିତ୍ରବାନ୍, ସତ୍ୟନିଷ୍ଠ, ସଦାଚାରୀ; ମାତ୍ର ଦୁର୍ଯ୍ୟୋଧନ ଧନୀ, ଗର୍ବୀ, ପର-ପୀଡ଼ନକାରୀ, ଅସଦାଚାରୀ, ପରଧନାପହାରୀ । ଶ୍ରୀକୃଷ୍ଣ ଗୁଣ-ବିଜ୍ଞ, ମାତ୍ର ସେ ବିଦୁରଙ୍କୁ ସମ୍ମାନ ଦେଖାଇ ତା ଘରକୁ ଯାଇ ଶାଗଭାତ ଖାଇବାକୁ ଭଲ ପାଇଲେ; ଅଥଚ ଦୁର୍ଯ୍ୟୋଧନ ଘରକୁ ଯାଇ ଅମୃତ ଭୋଜନ କରିବାକୁ ତୁଚ୍ଛ ମନେକଲେ ।

ଦୁର୍ଯ୍ୟୋଧନ ଘରେ ଶ୍ରୀକୃଷ୍ଣ ଭୋଜନ କରିଥିଲେ ସେ ଅହଙ୍କାର କରି ବାହାରେ କହି ବୁଲନ୍ତା—"ଆମେ ଜଣେ ଗୁଣୀଲୋକ, ଶ୍ରୀକୃଷ୍ଣ ଆସି ଆମ ଘରେ ଭୋଜନ କଲେ ।" କିନ୍ତୁ

ବିଦୁର କହି କହିଲେ, "ପ୍ରଭୁ, ଆଜି ମୋର ପରମ ସୌଭାଗ୍ୟ, ମୋ ଦ୍ୱାରେ ଆଜି ଆପଣଙ୍କ ପାଦ ପଡ଼ିଲା, ମୁଁ କୃତାର୍ଥ ହେଲି !" ଅନ୍ତର୍ଯାମୀ ଭଗବାନ ଶ୍ରୀକୃଷ୍ଣ ଏହି ହେତୁ ବିଦୁରଙ୍କ ଆମନ୍ତ୍ରଣକୁ ଆନନ୍ଦରେ ଗ୍ରହଣ କରିଥିଲେ ।

ଏଥିରୁ ବୁଝି ପାରିବ—ଧନ, ରତ୍ନ, ଆଉ ଅଳଙ୍କାର ଏଠାରେ କି କାର୍ଯ୍ୟରେ ଲାଗିଲା । ଲୋକ ଗରିବ ହୋଇ ଚରିତ୍ରବାନ ହେଲେ ସେ ଧନୀଠାରୁ ଶହ ଗୁଣରେ ବଡ଼ !

ସ୍ତ୍ରୀ—ଲୋକେ ତେବେ ଧନୀ ହେବାକୁ କାହିଁକି ଇଚ୍ଛା କରନ୍ତି ସ ?

ସ୍ୱାମୀ—ଧନୀ ହେବାକୁ ଇଚ୍ଛା କରିବାଟା ଖରାପ ବୋଲି ମୁଁ କହୁନାହିଁ । ଯଦି ଆପଣା ବାହୁବଳ ଦ୍ୱାରା କେହି ଧନ ଅର୍ଜି ପାରିଲା ଏବଂ ଧନୀ ହୋଇକରି ସୁଖ ସ୍ୱଚ୍ଛନ୍ଦରେ ରହିଲା ଏବଂ ସ୍ତ୍ରୀ ପାଇଁ ଆଉ ଅଳଙ୍କାର କରି ଦେଇ ପାରିଲା, ସେ କରୁ, ସେଥିରେ ତ କିଛି ମନା ନାହିଁ; କିନ୍ତୁ ଯାହାର ନାହିଁ, ସେ ପରଠାରୁ ମାଗିଆଣି ଆପଣାର ବୋଲି ପରିଚୟ ଦେବ କାହିଁକି ? ସେଟା ଭଲ ନୁହେ ।

ସ୍ତ୍ରୀ—ତେବେ ଧନୀ ହେଉ ନାହିଁ କାହିଁକି ! ଶାମବାବୁ ଅଦାଲତରେ କିରାଣୀ କାମ କରନ୍ତି । ଶୁଣିଥିଲି, ମାସକୁ ଦରମା ପମର ଟେଙ୍କା ତାଙ୍କର ବା ସେତିକି । ସେ ତ ତାଙ୍କ ସ୍ତ୍ରୀପାଇଁ ବହୁତ ଆଉ ଅଳଙ୍କାର କରିଛନ୍ତି, ତେମେ କାହିଁକି କରି ପାରୁ ନାହଁ ?

ସ୍ୱାମୀ—ସେ କପରି କରୁଛନ୍ତି, ମୁଁ ତ ବୁଝିପାରୁ ନାହିଁ । ସେ ଚୋରି କରୁଥିବେ ।

ସ୍ତ୍ରୀ—ସରକାରୀ ଚାକିରୀ କରୁଛନ୍ତି, ଚୋରି କରିବେ କାହିଁକି ସ ? ଚୋରି କଲେ ତ ଜେଲଖାନାକୁ ଯାଇଥାନ୍ତେ ।

ସ୍ୱାମୀ—ଅଗୋ, ଏ ସେପରି ଚୋରି ନୁହେଁ—ଏ ଧଳା ଚୋରି ।

ସ୍ତ୍ରୀ—ଅଗୋ, ଏ ଅଦ୍ଭୁତ କଥା ମୁଁ ଆଉ ଶୁଣି ନ ଥିଲି । ଚୋରରେ ପୁଣି ଧଳା କଳା କଣ ଅଛି ମ ?

ସ୍ୱାମୀ—ଏତିକି ବୁଝି ନାହଁ, ଆଉ କଣ ବୁଝିଛ ? ଧଳା ଚୋର ଅର୍ଥ—ଯାହାକୁ ଲୋକେ ଦେଖନ୍ତି ଶୁଣନ୍ତି ଅଥଚ ଧରି ପାରନ୍ତି ନାହିଁ । ଏ ଚୋରି ସାଧାରଣତଃ ଧୋବଧାଉଳିଆମାନେ କରନ୍ତି; ସୁତରାଂ ଏଠାକୁ ମୁଁ କହେ ଧଳା-ଚୋର । ମଳାମୁଣ୍ଡିଆ ଗରିବ ଲୋକମାନେ ଯେବେ ପେଟ ବିକଳରେ ନଡ଼ିଆଟାଏ, ଧାନ କେଣ୍ଡାଏ, କଦଳୀ ଫେଣାଏ ଚୋରି କଲେ, ସେଗୁଡ଼ାକ କଳା ଚୋର । ସେ ଚୋରପ୍ରତି କାହାର ଦୟା ମାୟା ନାହିଁ, ତାକୁ ଜେଲଖାନା ପଠାଇ ଦେବାକୁ କାହାର ଆପତ୍ତି ନାହିଁ । ଏ ପ୍ରକାର ଚୋରକୁ ମୁଁ କହେ କଳା-ଚୋର ।

ସ୍ତ୍ରୀ—ଧଳା-ଚୋରି କରିବା ଲୋକଙ୍କୁ କେହି ଧରନ୍ତି ନାହିଁ କାହିଁକି ?

ସ୍ୱାମୀ—ଧରିବେ କିପରି ? ଏମାନେ ତ ଧୋବ ଲୁଗା ପିନ୍ଧିଥାନ୍ତି ଏମାନଙ୍କର କ୍ଷମତା ଅଛି ଲୋକେ ଏମାନଙ୍କୁ ଦେଖିଲେ ପ୍ରାଣରେ ଡରନ୍ତି, ଆପଣା କାର୍ଯ୍ୟ ସାଧନ କରିବା ଉଦ୍ଦେଶ୍ୟରେ ଆପଣା ପେଟରେ ଓଦାଲୁଗା ଦେଇ କଂସା ତାଳ ବଜାଇ ଧଳା ଚୋରଙ୍କୁ ସନ୍ତୁଷ୍ଟ କରନ୍ତି । ଲୋକେ ତ ଖୁସିରେ ଦିଅନ୍ତି ନାହିଁ, ଦାୟରେ ପଡ଼ି ଦିଅନ୍ତି, ସୁତରାଂ ଧଳାଚୋରଙ୍କର ଦରମା ପାଞ୍ଚଟଙ୍କା ହେଲେ ଏ ବାଟରେ ଅଧିକ ପଚିଶ ଟଙ୍କା ମାରୁଥାନ୍ତି । ଏଥିପାଇଁ ଆଠ ଟଙ୍କା ଦରମା ପାଉଥିଲେ ମଧ୍ୟ ତାଙ୍କ ଘରେ ସବୁବେଳେ ଚୁଡ଼ାମାସ—ଅସୁ ଅଳଙ୍କାର ନ କରିବେ କିଆଁ ?

ସ୍ତ୍ରୀ—ଆଚ୍ଛା, କଳାଚୋରି ଧଳାଚୋରିରେ କିଛି ପ୍ରଭେଦ ନାହିଁ ?

ସ୍ୱାମୀ—କିଛି ପ୍ରଭେଦ ନାହିଁ । ପରଧନ ଅପହରଣ କରିବା ମହାପାପ ବୋଲି ତ ଶାସ୍ତ୍ର କହୁଛି ଜାଣି । ଲୋକଙ୍କୁ ନ କହି ତା ଘରୁ

କାନ୍ତ ନେଇଯିବା ଯାହା, ତା ଉଣ୍ଟିରେ ଗୋଡ଼ ପକାଇ ଅଣ୍ଟାରୁ ଛଡ଼ାଇ ନେବା ତାହା, ବରଂ ବେଶୀ ପାପ । ଦୁଇଥିରେ ଲୋକଙ୍କ ଆତ୍ମାକୁ ବାଧା ହୁଏ; ଆତ୍ମା ବାଧା ହେଲେ ଲୋକ ଅଭିଶାପ ଦିଏ ।

ସ୍ତ୍ରୀ—ତେବେ ଏମାନେ କଣ ଅଧର୍ମରେ ପଇସା ଆଣନ୍ତି ?

ସ୍ୱାମୀ—ଅଧର୍ମ ନୁହେଁ କଣ ଧର୍ମ । ଅଫିସ ମୁନ୍ସିପାଲ ଜୁରିରେ ମିଶାଇ କାମ କରିବା ଲାଗି ଯେଉଁ ଦରମାତକ ମିଳେ ସେଇତକ ନ୍ୟାୟରେ ମିଳେ; ବାକି ଯାହା ଆଣିବ ସେ ସବୁ ଅଧର୍ମ ମଲ !

ସ୍ତ୍ରୀ—କଥା ଅଛି ପରା "ଅଧର୍ମ ବିତ୍ତ ବଢ଼େ ବହୁତ, ଗଲାବେଳେ ଯାଏ ମୂଳ ସହିତ ।"

ସ୍ୱାମୀ—ହଁ ଏ କଥା ତ ମିଛ ନୁହେଁ । କେତେ ଜଣ ଅଧର୍ମ ବିତ୍ତ ନେଇ ପାଞ୍ଚ ପୁରୁଷ ତଳ ପୁରୁଷ ଧର କରିବାର ଦେଖିଛ ?

ସ୍ତ୍ରୀ—ନା ! କହନ୍ତି ପରା ଅମୁକ ଯେପରି ଅନ୍ୟାୟରେ ଆଣିଥିଲା, ସେହିପରି କୁଆଡ଼େ ଉଡ଼ିଯାଇ ଗଲା !

ସ୍ୱାମୀ—ତେବେ ତମେ କଣ ମତେ ପରାମର୍ଶ ଦେଉଛ ଯେ ମୁଁ ଧଳାଭେକର କର ପଇସା ଆଣି ତମ ପାଇଁ ବେଶୀ ଗହଣାଗାଣ୍ଠି କରିଦେବ ?

ସ୍ତ୍ରୀ—ତମେ କଣ ମୋ ପରାମର୍ଶ ଅନୁସାରେ କାମ କରୁଛ ?

ସ୍ୱାମୀ—ନାହିଁ ହେ, ମୁଁ ତମ ପରାମର୍ଶ ଅନୁସାରେ କାମ କରୁନାହିଁ ସତ, କିନ୍ତୁ ମୁଁ ଯେତେଦୂର ଜାଣେ ସ୍ତ୍ରୀମାନଙ୍କ କଥା ଶୁଣି ଅନେକ ଲୋକ କେବଳ ସ୍ତ୍ରୀମାନଙ୍କ ମନ ରକ୍ଷା କରିବା ଲାଗି ଏପରି କାମ କରିଥାନ୍ତି ।

ସ୍ତ୍ରୀ—ସ୍ତ୍ରୀ ମନ ରକ୍ଷା କାହିଁକି କରନ୍ତି ?

ସ୍ୱାମୀ—ଅନେକ ସ୍ତ୍ରୀଲୋକ ଅଛନ୍ତି, ସେମାନେ ସ୍ୱାମୀର ଅବସ୍ଥା ନ ବୁଝି କେବଳ ଆପଣା ଅଳଙ୍କାର ହେଲା ନାହିଁ, ଭଲ ଘର ହେଲା ନାହିଁ, ଭଲ ଲୁଗାପଟା ହେଲା ନାହିଁ, ଇତ୍ୟାଦି ନାନାପ୍ରକାର ତୀବ୍ର ସମାଲୋଚନା କରି ଅହରହ ସ୍ୱାମୀଙ୍କୁ ବସାଇ ଉଠାଇ ଦିଅନ୍ତି ନାହିଁ । ଯା ଉଦାହରଣ ତା ଉଦାହରଣ ଆଣି ଦେଇ ନାନାପ୍ରକାର କଳହ, ମନାନ୍ତର, ବାଦବିବାଦ ଆରମ୍ଭ କରି ଅଶାନ୍ତି ଉପସ୍ଥିତ କରନ୍ତି । ସ୍ୱାମୀମାନେ ସ୍ତ୍ରୀମାନଙ୍କୁ ସନ୍ତୁଷ୍ଟ କରିବା ଏବଂ ଅନେକ ସ୍ଥଳରେ ଆପଣାର ଧନ ଲାଳସା ପରିତୃପ୍ତ କରିବା ନିମନ୍ତେ ଧଳାଚୋର କରି ପଇସା ରୋଜଗାର କରନ୍ତି । ମାତ୍ର ଶତ ଶତ ଲୋକ ପଛରେ ଦୀର୍ଘ ନିଃଶ୍ୱାସ ପକାଇ ଅମଙ୍ଗଳ କାମନା କରୁଥାନ୍ତି । ତମେ କଣ କହୁଛ ଏହିପରି ଉପାୟରେ ଧନ ଆଣି ଘର କରିବା ?

ସ୍ତ୍ରୀ—ତମେ କଣ କହୁଛ ଯେ, ଯେତିକି ଆଜିକାଲି ଗୃକ୍ଷ କରନ୍ତି, ସମସ୍ତେ ଧଳାଚୋର କରି ନେଉଥାନ୍ତି ?

ସ୍ୱାମୀ—ନା, ନା, ମୁଁ ଏ କଥା କହିବି କାହିଁ ? ଅବଶ୍ୟ ଧର୍ମିଷ୍ଠ ଲୋକ ଅଛନ୍ତି, ସେମାନେ ଆପଣା ଦରମା ଗଣ୍ଡାକ ଛଡ଼ା ଆଉ ପାନ ଖଣ୍ଡେ ସୁଦ୍ଧା ଗ୍ରହଣ କରନ୍ତି ନାହିଁ । ସାଧାରଣତଃ ଭଲ ଥୋଇଲା ଘର ପିଲାମାନେ ଗୃକ୍ଷ କରିବାକୁ ଗଲେ ସେମାନେ ଏପରି କାର୍ଯ୍ୟକୁ ଘୃଣା କରନ୍ତି । କେବଳ ନଅଣ୍ଟିଆ ଘରର ପିଲାମାନେ ଲୋଭ ସମ୍ବରଣ କରି ନ ପାରି ଗୁଳିଆଡ଼କୁ ହାତ ବୁଲନ୍ତି । ଯା ଛଡ଼ା ଗରିବଙ୍କ ମଧ୍ୟରେ ମଧ୍ୟ ସତ୍‌ଲୋକ ଥିବାର ଦେଖାଯାଏ ।

ସ୍ତ୍ରୀ— ଯେ ଯାହା କରୁ ପଛକେ ଆମର ସେପରି ଅସତ୍ ଉପାୟରେ ପଇସା ଅଣି ବଡ଼ଲୋକ କରିବା ଆବଶ୍ୟକ ନାହିଁ । କେତେ କାଳ ବଞ୍ଚିବା ଯେ ଏଥିରୁ ଗୁଡ଼ାଏ ପାପ ଅର୍ଜିବା ?—ପଛରେ ବାର ଲୋକେ ଚାର ଅଭିଶାପ ଦେଉଥିବେ । ଯାହା ଅମକୁ ଭଗବାନ ଦେଲେ ସେଇତକ ଧୋଇ ଶୁଖାଇ ଖାଇବା । ଭଲ ବାଟରେ ଚଲେ ଭଗବାନ ଅବଶ୍ୟ ଆମକୁ ସାହାଯ୍ୟ ହେବେ !

ସ୍ୱାମୀ—ଠିକ୍ ବୁଝିଛ, ତୁମ୍ଭେ ସ୍ତ୍ରୀମାନେ ଏପରି ବୁଝି ସ୍ୱାମୀମାନଙ୍କୁ ଉପଯୁକ୍ତ ସମୟରେ ଚେତାଇ ଦେଲେ ସେମାନେ ଅନେକ ପାପ କାର୍ଯ୍ୟରୁ ବଞ୍ଚିତ ହୁଅନ୍ତେ । ଆଚ୍ଛା, ଆଜି ଏତିକି ଥାଉ ।

---

## ନବମ ପରିଚ୍ଛେଦ

ସ୍ତ୍ରୀ— (ସ୍ୱଗତ) ଅଜି ଆସନ୍ତୁ ଟିକିଏ ହେବା ! କାହିଁକି ନ— ଏତେ ବଡ଼ାଇ ମାରେ ଯେ, ମତେ ପୁଣି ଯାହା ଇଚ୍ଛା ତାହା କହିବ ? ମୋର କଏ ଅଛି ନ ? ଏ ନାଆଁ ଲାଗିର ଚିହ୍ନିଥିଲି କାହାଣେ, ଏ ଗୁଡ଼ାକ ଖାଇପିଇ ମଜା କରିବେ—ମୋ ସାଆନ୍ତ ରୋଜଗାର କରି କରି ମରିବ ! ଯୋ ସ୍ୱାମୀ କୁଠା ନଣ୍ଡକ ଖଣ୍ଡେ କରିବ ନାହିଁ, ପଣା ପାହୁଲାଟିଏ କେଉଁଠୁ ଆଣିବ ନାହିଁ, ବସି କରି ପାଲିଆ ଗୁଣ୍ଡା ମାରିବ, ଅଉ ମାଇପର ଗୁମର କେତେ ? ପୁଣି କହିଲି ବେଳକୁ ପାଟିକି ପାତି ଲଗାଇ କାଳି କରିବାକୁ ଅଣ୍ଟାରେ ଲୁଗା ଭିଡ଼ି ତିଆର ! ଅଜି ପୁଣି କହିଲା କଣ ନା "ମତେ ପାଡ଼ି ପିଠା ନା, ଖଡ଼ୁ ମୁଆଏ ପକାଇବ ଯେ ।" ଅଉ ଏକଥା ସହିପାରିବ ନାହିଁ । କାହିଁକି କାହାର ସହିବ ନ ? ମୁଁ କାହା ଖାଏ ନା

ଧାରେ ? ଏ ଶାସ୍ତ୍ରୀର କେଡ଼େ ବଡ଼ାଇ ମ, ଅଳି ଭଳେ ହେଲେ ଜଳ ଗ୍ରହଣ କରିବ । ଅଳି ଘରେ ଗୋଡ ନ ଦେଉଣୁ ଏଇ କଥା କରିବାକୁ ହେବ । ହେବେ ମୋ କଥା ନ ମାନିବେ, ଅନ୍ନ ପ୍ରାଣ ହରାଇ ଦେବ ନ ହେଲେ ବାପ-ଘରକୁ ଚାଲିଯିବ । କାହିଁକି କଥର ସହିବ ମ ? ମୋ ଗୋଡ଼ଧୁଆ ପାଣିକି ଏ ଗୁଡ଼ାକ ସରି ହେବେ ! ସ୍ୱାମୀଙ୍କ ଘାଟରେ ରହିଲାକୁ ଯିନା ଏତେ କଥା ଶୁଣିଲି । ଆଉ ଏ ଗୁଡ଼ାକ ସହି ପାରିବ ନାହିଁ । ଅଳି ତ ଯାହା ହେବାର ହେବ (ମୌନରେ ବସିବା ) ।

ସ୍ୱାମୀ—(ପ୍ରବେଶ) ଓଃ, ଆଜି ତ ବଡ଼ ବିଚିତ୍ର ବ୍ୟାପାର ଦେଖୁଛି । ହଇଗୋ ରାମାବୋଉ, ଆଜି ମୌନାବତାର କାହିଁକି ମ, ଆହେ କହ, କହିଲେ ଯିନା ଜାଣିବା । କଥା ନ କହିଲେ ତମ ମନକଥା କିପରି ଜଣାଯିବ ।

ସ୍ତ୍ରୀ—ଚୁଲି ମୁଣ୍ଡ, କହିବି କଣ ମ ? କହୁ ନାହିଁ ନା ତମେ ଶୁଣି ନାହଁ ? ତମକୁ କହିଲେ ଯାହା ବାଉଅଡ଼େ ବସି କାନ୍ଦିବା ତାହା । ତେମେ ମୋ କଥା କାହିଁକି ଶୁଣିବ ? ମୁଁ ତମର କଣ କି ? ମୁଁ ଦଶଥର କହିଲି ଅନ୍ତର ଭଳେ ହୋଇଯିବା—ଏ ଭାଇ ଭଉଣୀଙ୍କ ସାଥିରେ ଆମର ପଟିବ ନାହିଁ । ତେମେ ତ ସେକଥା ଶୁଣିଲ ନାହିଁ । ଏବେ ତମ ଘର ଦ୍ୱାର ତେମେ କର—ମୁଁ ବାଟ ଦେଖିବ । ଏତିକି ତମକୁ କହିବା ପାଇଁ ରହି ବସିଥିଲି, ମୁଁ ଯାଉଛି ।

ସ୍ୱାମୀ—ଅଳି କଣ ହେଲା କି ପୁଣି । ଅହେ, ଶୁଣ ଶୁଣ, କଣ କଥାଟା କହ, ଅଜି ତମ କଥା ନିଶ୍ଚୟ ବୁଝିବା ।

ସ୍ତ୍ରୀ—କାଣ୍ଟେ ବୁଝିବ କହିଲ, ମୋ ରାଣଟି ସତ କର କହିଲ, ମୁଁ ଯାହା କହିବି ତାହା କରିବ କି ନାହିଁ ?

ସ୍ୱାମୀ—ତମେ ଯାହା କହିବ ତାହା କରିବି, ଏ କଥା ମୁଁ କହି ପାରିବି ନାହିଁ । କଥାଟା ଆଗେ ଶୁଣେ, ତମ କଥା ଅନୁସାରେ ଯେବେ କାର୍ଯ୍ୟ କରିବାର ଉଚିତ ମନେ କରିବି, ତେବେ କରିବି ।

ସ୍ତ୍ରୀ—ମୁଁ ପରା ଜାଣେ, ତମ ଆଗେ କହି କିଛି ଫଳ ନାହିଁ, ମୁଁ କହିଲେ କହୁ କହୁ ଗୋଟାଏ ମହାଭାରତ ଆରମ୍ଭ ହେବ !

ସ୍ୱାମୀ—ଅଗୋ, ମହାଭାରତ ଶୁଣିବା ତ ମହାପୁଣ୍ୟ କଥା, କେତେ ଜଣଙ୍କ କପାଳରେ ଘଟେ ? ତମେ ଯେବେ ଏଡ଼େ ଶସ୍ତାରେ ମହାଭାରତ ଶୁଣିବାକୁ ପାଅ, ତେବେ ତ ଆମର ମହାଭାଗ୍ୟ ! କଥାଟା କହ !

ସ୍ତ୍ରୀ—ମୁଁ ତମ ହିତ କଥା କହୁଛି, ଅହିତ କଥା ତ କହୁ ନାହିଁ, ତମେ କରିବ ନାହିଁ କାହିଁକି ?

ସ୍ୱାମୀ—ହିତ କଥା ହେଲେ ଅବଶ୍ୟ କରିବି; ତମ ରାଣ ପକାଉଛି, ନିଶ୍ଚୟ କରିବି ।

ସ୍ତ୍ରୀ—ଆଚ୍ଛା କହିଲ, ତମେ କେଉଁ ଦିନ ଭିନେ ହେବ ?

ସ୍ୱାମୀ—କଣ ଭିନେ ହେବି ? କାହାଠାରୁ ?

ସ୍ତ୍ରୀ—ତମ ସାନ ଭାଇଙ୍କଠାରୁ ତ କାହାଠାରୁ ?

ସ୍ୱାମୀ—ଓଃ, ଏଇ କଥା । କାହିଁକି, ତାର ଅପରାଧ କଣ ?

ସ୍ତ୍ରୀ—ନାହିଁ, ତାଙ୍କର ଅପରାଧ କଣ ? ଅପରାଧ ତ ସବୁ ମୋର ! ତାଙ୍କ କଥା ଗୁଡାକ କଣ ତମ ଆଖିକି ଦିଶିବ ? ତମ ବୁଝା-ମଣାରେ ତ ମୁହିଁ ଦୋଷୀ ? ସେଥିଲାଗି କହୁଥିଲି, ତମ ଆଗେ କହିଲେ ଯାହା, ବାଡ଼ିଆଡ଼େ ବସି କାନ୍ଦିଲେ ତାହା ।

ସ୍ୱାମୀ—ଅଚ୍ଛା ହେଲା, ତମର କିଛି ଦୋଷ ନାହିଁ । ସେ ତ ମୋର ଭାଇ, ଏକା ନାହି ଦେଖଣ୍ଡି, ମୁଁ କିପରି କହିବି ଯେ ତୁ ଅଲଗା ହୋଇ ଯା ? କାରଣ କଣ ?

ସ୍ତ୍ରୀ—ତମେ ତ ରୋଜଗାର କରିବ, ତାଙ୍କ ପିଲାଏ ଚରିବେ କଆଁ ?

ସ୍ୱାମୀ—ତାଙ୍କ ପିଲାଏ କଣ ଆମର ନୁହନ୍ତି ?

ସ୍ତ୍ରୀ—ତାଙ୍କ ପିଲାଗୁଡ଼ାକ ତମର କିପରି ହେଲେ ମ ?

ସ୍ୱାମୀ—ତମେ କିପରି ମୋର ହେଲ ?

ସ୍ତ୍ରୀ—ମୁଁ ତମର ବୋଲି ତ ସଂସାର ଜାଣନ୍ତି । ହାତଗଣ୍ଠି ପଡ଼ିଲା ଦିନୁ ତମେ ମୋର, ମୁଁ ତମର ।

ସ୍ୱାମୀ—ହାତଗଣ୍ଠି ପଡ଼ିବା ପୂର୍ବରୁ ତ ତେମେ ମୋର କିଛି ନ ଥିଲ କି ମୁଁ ତମର କିଛି ନ ଥିଲି । ତମ ସହିତ ମୋର ଦେଖା-ସାକ୍ଷାତ, ଚିହ୍ନା ଅଦୌ ନ ଥିଲା । ତେବେ ବ୍ରାହ୍ମଣ ମନ୍ତ୍ର ପାଠ କରି ତମ ହାତ ସହିତ ମୋ ହାତକୁ ଗଣ୍ଠି ପକାଇ ଦେଲାରୁ ତମେ ମୋର ହେଲ ଏବଂ ମୁଁ ତମର ହେଲି । ଅଚ୍ଛା, ତମ ଭାଇ କଣ ତୁମର ନୁହେ ?

ସ୍ତ୍ରୀ—ଏକା ମା ପେଟରୁ ଭାଇଟା ଜନ୍ମ ହୋଇଛି, ସେ ମୋର ନୁହେ କିପରି ମ ? ତେବେ ଆମେ ତ ପରଘରକୁ ଆସିଲୁ, ତାଙ୍କ ସାଥିରେ ଆଉ ଆମର କଣ ଅଛି ?

ସ୍ୱାମୀ—ତେବେ ତମ ଭାଇଟି ତମର ହେଲା, ମୋ ଭାଇଟି କାହିଁକି ମୋର କିଛି ନୁହେ ? ଭାଇ ସମ୍ପର୍କରୁ ବଳି ସମ୍ପର୍କ ନାହିଁ । କଥା ଅଛି "ଭଲ କରିବାକୁ ମନ ଥିଲେ ସଙ୍ଗେ ଥିବ ଭାଇ ।"

ସ୍ତ୍ରୀ—କଥା ତ ପୁଣି ଅଛି "ଯେତେ ଭାଇ ସେତେ ଘର ।"

ସ୍ୱାମୀ—ସେ କଥା ଠିକ୍ ନୁହେଁ । ପାଞ୍ଚ ଭାଇ ଏକମନ ଏକଚିତ୍ତ ହୋଇ ଏକାଠି ଥିଲେ ଯେପରି ବଳ ଥାଏ, ପୃଥକ୍ ହୋଇଗଲେ କଣ ସେପରି ବଳ ଥାଏ ?

ସ୍ତ୍ରୀ—କାହିଁକି ବଳ ନ ହେବ ମ ? ଯେ ଯାହା ହାତରେ ସେ ଚଉଦ ପା, ଅନ୍ୟ କଥା କଣ ଆମେ ବୁଝିପାରୁନା ନାହିଁ ?

ସ୍ୱାମୀ—ଅଚ୍ଛା, ସେ ପିଣ୍ଡାରେ ଯେଉଁ ପାଳଦଉଡ଼ି ଖଣ୍ଡ ପଡ଼ିଛି, ତାକୁ ଆଣି ଛିଣ୍ଡାଇଲ ?

ସ୍ତ୍ରୀ—ଦଉଡ଼ିଟା କପରି ଛିଣ୍ଡିବ ମ ! ସେଥିରେ ବାନ୍ଧିଦେଲେ ହାତୀ ଅଟକି ରହିବ, ମୁଁ ତାକୁ ଛିଣ୍ଡାଇବି କପରି ?

ସ୍ୱାମୀ—ଅଚ୍ଛା, ସେ ଦଉଡ଼ିକି ଯେବେ ଫିଟାଇଦେବା ତଣି ହେବ ।

ସ୍ତ୍ରୀ—କୁଟାଗୁଡ଼ାକ କେରା କେରା ହୋଇ ବାହାରିଯିବ ।

ସ୍ୱାମୀ—ଅଚ୍ଛା, ଏବେ ସେ କୁଟାକୁ ଛିଣ୍ଡାଇ ପାରିବ ?

ସ୍ତ୍ରୀ—କୁଟାଟାକୁ ଛିଣ୍ଡାଇ ଦେବି ନାହିଁ କାହିଁକି ମ ?

ସ୍ୱାମୀ—ଅଚ୍ଛା, ସେ କୁଟାଟାରେ ହାତୀ ବାନ୍ଧି ହେବ ?

ସ୍ତ୍ରୀ—ଏ ଅପୂର୍ବ କଥାକୁ ମୁଁ ଅଉ ପାରିବି ନାହିଁ, କୁଟାଟାରେ କପରି ହାତୀ ବନ୍ଧା ହେବ ମ ?

ସ୍ୱାମୀ—ମୁଁ କଣ କହୁଛି ? ମୁଁ ତ ସେହି କଥା କହୁଛି—କୁଟା ଠାକୁ ଏକାଠି ଦଉଡ଼ି ବଳିଦେଲେ ହାତୀ ବନ୍ଧା ହେବ; ମାତ୍ର ପିଠାଇ ଦେଲେ ହାତୀ କଥା ଦୂରେ ଥାଉ, ଗୋଟାଏ ମୂଷା ଛୁଞ୍ଚା ବାନ୍ଧି ହେବ ନାହିଁ । ଏକାଠି ଥିଲେ ଭେଡ଼େ ଜୋର, ଏବେ ବୁଝିଲ ଠିକ ?

ସ୍ତ୍ରୀ—ତା ତ ସତ; ତେବେ ଏ କଥା ସାଙ୍ଗରେ ତାର କଣ ଅଛି ?

ସ୍ୱାମୀ—ଏ କଥା ସହିତ ଖୁବ୍ ସମ୍ପର୍କ ଅଛି । ପାଞ୍ଚ ଭାଇ ଏକମନରେ ଗୋଟିଏ ଘରେ ଥିଲେ ସେ ଘରେ ବାଘ ପଶି ପାରିବ ନାହିଁ, କାରଣ ପାଞ୍ଚ ଜଣଯାକ ଆପଣା ବଳ ଏକାଠି କରି ବାଘକୁ ଘଉଡ଼ିଦେବାକୁ ସମର୍ଥ ହେବେ; ମାତ୍ର ଜଣେ ସେପରି କରି ପାରିବ କି ?

ସ୍ତ୍ରୀ—ନା, ତା କିପରି ପାରିବ ?

ସ୍ୱାମୀ—ତେବେ ତ ଏଥିରୁ ବୁଝିଲ, ଭାଇ ଭାଇ ମଧ୍ୟରେ ଭିନେ ହେଲେ ସେ ଘର ଆଉ ଘର ହୋଇ ରହେ ନାହିଁ ।

ସ୍ତ୍ରୀ—ଘରଟା ରହିବ ନାହିଁ କଣ କୁଆଡ଼େ ଯିବ ?

ସ୍ୱାମୀ—ଘରଟା କାହିଁକି କୁଆଡ଼େ ଯିବ ? ଗୋଟାଏ ଦ୍ୱାର ଅଛି, ପାଞ୍ଚଟା ଦ୍ୱାର ହେବ । ଗୋଟାଏ ମନ ଅଛି, ପାଞ୍ଚଟା ମନ ହେବ । ଗୋଟାଏ ହୁକୁମ ଚାଲୁଛି, ପାଞ୍ଚଟା ହୁକୁମ ଚାଲିବ । ଗୋଟାଏ ହାଣ୍ଡି ଅଛି, ପାଞ୍ଚଟା ହାଣ୍ଡି ହେବ । ପରସ୍ପର ମଧ୍ୟରେ କଳହ ମନାନ୍ତର ହେବ, ଯା' ଛିଦ୍ର ସେ ଖୋଜିବ—ତା ଛିଦ୍ର ଏ ଖୋଜିବ । ପରସ୍ପର ପରସ୍ପରର ଅନିଷ୍ଟ ଖୋଜି ବୁଲିବେ । ଯେଉଁମାନେ ଏକାଠି ଥାଇ ପରମ ମିତ୍ର ଥିଲେ, ସେମାନେ ଭିନେ ହୋଇ ପରମ ଶତ୍ରୁ ହେବେ । ଦାଣ୍ଡଲୋକେ ନାଟ ଦେଖିବେ । ଓକିଲ ମିକ୍ତିଆରମାନଙ୍କ ବ୍ୟବସାୟ ବଢ଼ିବ । ଯା' କଥା ତା ଆଗେ କହି, ତା କଥା ଯା' ଆଗେ କହି ପାଲି ଲଗାଇବେ ! ଫଳରେ ଏହି କଥା ହେବ ! କଣ କହୁଛ, ଏ କଥା ହେବ ନାହିଁ ?

ସ୍ତ୍ରୀ—ହଁ, ହେବ ନାହିଁ କଣ ? କହନ୍ତି ଘର ଭେଦ ବିବାଦରେ ଲଙ୍କାପୁର ଜୁର ହେଲା !

ସ୍ୱାମୀ—ଜାଣ ତ, କହନ୍ତି କିଆଁ ? ରାବଣ ଯଦି ବିଭୀଷଣ କଥା ଶୁଣିଥାନ୍ତା, ତାଙ୍କୁ ଘରୁ ତଡ଼ି ଦେଇ ନ ଥାନ୍ତା, ତେବେ ରାମଚନ୍ଦ୍ର କଣ ରାବଣର ମରମ କଥାମାନ ସହଜରେ ଜାଣି ପାରିଥାନ୍ତେ ? ରାବଣ ଯେପରି ମନ୍ଦ ବୁଦ୍ଧି କରି ଭାଇ ସାଥିରେ ବିମନା ହେଲା, ସେପରି ସୁବର୍ଣ୍ଣପୁରୀ ଲଙ୍କା ଛାରଖାର ହେଲା, ଆପେ ସବଂଶରେ ମଲା । କିନ୍ତୁ ଲକ୍ଷ୍ମଣ ରାମଚନ୍ଦ୍ରଙ୍କ ସାଥିରେ

ଥିବାରୁ ଏବଂ ଏକମନ ଏକ ପ୍ରାଣରେ ଲଢ଼ିବାରୁ ରାବଣକୁ ହରାଇଦେବାକୁ ସମର୍ଥ ହେଲେ । ଲକ୍ଷ୍ମଣ ପରି ରାମଚନ୍ଦ୍ରଙ୍କ ପାଖରେ ଥିବାରୁ ରାମଚନ୍ଦ୍ର ଶତ୍ରୁସିଂହ ପରାକ୍ରମରେ ଯୁଦ୍ଧ କଲେ, ଜିଣିଲେ ଏବଂ ବନବାସ ଦୁଃଖ ଭୁଲିଗଲେ । ଏ ତ ଗଳ୍ପ ପୁରାଣ କଥା, ଏବେ କଣ ଏପରି ଘଟଣା ଦେଖୁ ନାହିଁ ? ରାଣ୍ଠସିଂହ ଘରଠୁଁ ବଳି ଆଜ କାଏ ବେଶି ଘର କରୁଥିଲା ? ଯେଉଁ ଦିନ ଦୁଇ ଭାଇ ଭିନେ ହେଲେ, ସେହି ଦିନଠୁଁ ତାଙ୍କ ଘର ଭାଙ୍ଗିଲା । କେତୋଟା ବର୍ଷ ମଧ୍ୟରେ ସବୁ ସମ୍ପତ୍ତି ପାଣି ଲାଗିଲା ପରି ଉଡ଼ିଗଲା । ଏ ତ ଆମ ଦେଖା କଥା—ଶୁଣା କଥା ତ ନୁହେଁ ?

ସ୍ତ୍ରୀ—ହିଁ, ଏପରି ତ କେତେଠି ଦେଖା ଯାଉଛି, ମୁଁ କଣ ସେକଥା ମାନୁ ନାହିଁ । ତେବେ ଭାଇରେ ଭାଇ ଅଛନ୍ତି ନା । ତେମେ ମିଳା କହିଲ ଭାଇ ଭାଇ, ଭାଇ ତ ସେ କଥା ବୁଝୁ ନାହାନ୍ତି, ଘରେ ବସି ତାଙ୍କର ଯେଉଁ ଚଉଦ ଠାଣି, ସାନ ବୋହୂର ଯେଉଁ କଥା, ସେଗୁଡ଼ାକ କାହା ଦାହରେ ମିବ ? ସେଗୁଡ଼ାଙ୍କର ଏତେ କାଏ ସହିବ ?

ସ୍ୱାମୀ—ସେଥିରେ କଣ ଏକା ତାଙ୍କର ଦୋଷ, ଆମର କିଛି ଦୋଷ ନାହିଁ ? ଏକା ହାତକେ କଣ ତାଳି ବାଜେ ?

ସ୍ତ୍ରୀ—ମୋ ଜାଣିବାରେ ତ ମୋର କିଛି ଦୋଷ ନାହିଁ ।

ସ୍ୱାମୀ—ଦୋଷ ନାହିଁ କଣ । କିନ୍ତୁ ମଣିଷ ଆପଣା ଦୋଷ ଆପେ ଧରିପାରେ ନାହିଁ । ଅଚ୍ଛା, ତେମେ ସତ କରି କହିଲ—ତମ ମନରେ ଟିକିଏ ଗର୍ବ ଥାଏ କି ନାହିଁ । ତମ ସ୍ୱାମୀ ରୋଜଗାରିଆ, ବଡ଼ଲୋକ, ତେମେ ବାବୁଆଣୀ, ଅନ୍ୟମାନେ ତମ ଅନ୍ନରେ ପ୍ରତିପାଳିତ ବୋଲି ସବୁବେଳେ ମନରେ ଟିକିଏ ଥାଏ କି ନାହିଁ ।

ସ୍ତ୍ରୀ—ତା ଠିକ ଏ ନ ଥାଏ କଣ ? ମୋ ମନରେ ସିନା ଥାଏ, ମୁ
କଣ ସେମାନଙ୍କୁ ଖାଇବାକୁ ଦିଏ ନାହିଁ ?

ସ୍ୱାମୀ—ଦେଖ, ତମର ଏଇଠି ବୁଝିବାରେ ଭ୍ରମ ଅଛି । ତମେ
ହାତରେ ଅମୃତ ଭୋଜନ ଦିଅ, କିନ୍ତୁ ଯେବେ ମନରେ ଖୋଚା
ରଖି ଦେଲ, ତେବେ ସେପରି ଦେବା ନ ଦେବା ଯାହାରେ
ସମାନ । ମନ ନିର୍ମଳ ଥିଲେ କପଟ, ମନ ନିର୍ମଳ ନ ଥିଲେ
କପଟ ? କାହା ମନ କପଟ, ତାହା କଣ ବ୍ୟବହାରରୁ ଜଣା
ପଡ଼ିବ ନାହିଁ ?

ସ୍ତ୍ରୀ—ହଁ ତା ସତ ।

ସ୍ୱାମୀ—ମୁଁ ତ ସେହି କଥା କହୁଥିଲି, ଏତେ ବେଳଯାଏ ବୁଝୁ ନ
ଥିଲ କାହିଁକି ? ତେବେ ତାର ଯେ ଦୋଷ ଏକାବେଳକେ
ନାହିଁ, ମୁଁ ଏ କଥା କହୁନାହିଁ ।

ସ୍ତ୍ରୀ—ତାର ଯେବେ ଦୋଷ ହେଲା, ତେବେ କିପରି କହିବ ?

ସ୍ୱାମୀ—ଚଳିବାର ଉପାୟ ଅଛି । ଯେ ଘରର ମୁରବି ହେବ, ତାକୁ
ଅନେକ କଥା ସହିବାକୁ ପଡ଼ିବ । ସହିବାଟା ଭଲ ଗୁଣ ।
ଦେଖ ପୃଥିବୀ କେତେ କେତେ ଭାର ବହନ କରୁଛି । ପୃଥିବୀ
ଯଦି ରାଗ କରି କହେ, ମୁଁ ଏତେ ଲୋକଙ୍କର ଏତେ ଭାର
ସହି ପାରିବି ନାହିଁ; ମୁଁ ଯାଉଛି, ତେବେ ଏକ ମୁହୂର୍ତ୍ତରେ
ସମସ୍ତେ ରସାତଳକୁ ଯିବେ । ସୁତରାଂ ମୁରବିର ନିତ୍ତ ଧୀର
ହେବା ଆବଶ୍ୟକ । ସବୁ କଥା ଶୁଣି ସହ୍ୟ କରିବ, ସେମାନଙ୍କ
ରାଗ ଶାନ୍ତ ହେଲା ବେଳେ ସେମାନଙ୍କୁ ଉପଯୁକ୍ତ ଉପଦେଶ
ଦେଇ ବୁଝାଇ ଦେବ । ଲୋକମାନଙ୍କ ମଧ୍ୟରେ କଳି
ତକରାର ହୁଏ କାହିଁକି ? ସ୍ୱାର୍ଥ ପାଇଁ ତ ?

ସ୍ତ୍ରୀ—ହଁ ।

ସ୍ୱାମୀ—ତେବେ ଯେ ମୂରବି ହେବ, ତାକୁ ଟିକିଏ ସ୍ୱାର୍ଥ ଛାଡ଼ିବାକୁ ହେବ । ଶୁଣିଥିଲ ଟି, ସେ ଦିନ ମିଶ୍ରଙ୍କ ଘର ବଣ୍ଟା ହେଲା-ବେଳେ କଣ ହେଲା ? ଘରେ ଥିଲା କଂସା ଦିଖଣ୍ଡ—ଖଣ୍ଡେ ବଡ଼, ଖଣ୍ଡେ ସାନ । ବଡ଼ ମିଶ୍ରେ କହିଲେ—ସେ ବଡ଼ କଂସାଖଣ୍ଡ ନେବେ; ସାନ ମିଶ୍ରେ କହିଲେ—ସେ ସେଇଖଣ୍ଡ ନେବେ; କିନ୍ତୁ ବଡ଼ ମିଶ୍ରେ ଏତିକ ବୁଝିଲେ ନାହିଁ ଯେ, ଆପଣା ସାନ ଭାଇ ତ ନେବ, ନେଉ, ଅଧିକା ପଲେ ଦିପଲ ପାଇବ, ଆଉ କଣ ! ଏତିକ ନେଇ ବଡ଼ ମିଶ୍ରେ ଦିନକାଳ କାଟିବେ ? ଏତିକ ବୁଝି ସାନ ଭାଇକି ବଡ଼ କଂସାଖଣ୍ଡକ ଦେଇଥିଲେ ଆଉ କିଛି ହୋଇ ନ ଥାନ୍ତା; ମାତ୍ର ବଡ଼ ମିଶ୍ରେ ବୁଝିଲେ ଓଲଟା । ସେ କହିଲେ—କି ହୋ, ଆମେ ବଡ଼ ଭାଇ, ଆମେ ବଡ଼ଖଣ୍ଡ ନ ନେଇ ସାନ ଭାଇ କିପରି ନେବ ? ଏ କଥା ତ କେବେ ହେବ ନାହିଁ । ଫଳରେ ହେଲା—ରାଗାରାଗି ହୋଇ ଦି'ଭାଇଯାକ ମାଡ଼ ଫୌଜଦାରି କରି ମୁଣ୍ଡ ଫଟାଫଟି ହେଲେ ! ଦାଣ୍ଡରେ ଲୋକେ ହସିଲେ ! ଏହିପରି ସାମାନ୍ୟ କଥାରୁ ଭୟାନକ କାଣ୍ଡ ହୁଏ । ଦୁର୍ଯ୍ୟୋଧନ ଭାଇ-ମାନଙ୍କୁ ପାଞ୍ଚଖଣ୍ଡ ଗାଁ ଦେଇଥିଲେ ଆଉ କଣ ମହାଭାରତ ଯୁଦ୍ଧ ହୋଇଥାନ୍ତା ? ସେତିକ ନ କଲା, ସବଂଶରେ ମଲା, ଭାରତ ଛାରଖାର ହେଲା, କ୍ଷତ୍ରିୟକୁଳ ଲୋପ ହେଲା ! ଏ ଗୋଟିଏ ପ୍ରକାର ଭାଇପଣିଆ । କିନ୍ତୁ ଆଉ ଗୋଟିଏ ପ୍ରକାର ଭାଇପଣିଆ କଥା ଶୁଣିବ ? ରାମଚନ୍ଦ୍ର ଆପଣା ଖୁସିରେ କହିଲେ ଭରତ ରାଜା ହେବେ, ସେ ବନବାସ ଯିବେ; କିନ୍ତୁ ଭରତ କଣ କଲେ ? ଭରତ ରାମଚନ୍ଦ୍ରଙ୍କ ପାଦୁକା ସିଂହାସନରେ ରଖି ରାମଚନ୍ଦ୍ରଙ୍କ ନାମରେ ଶାସନକାର୍ଯ୍ୟ ଚଳାଇଲେ । ଭରତ

ଭାବିଲେ, ଜ୍ୟେଷ୍ଠ ଭାଇ ଥାଉଁ ଥାଉଁ ମୁଁ କପରେ ରାଜା ହେବି ? ମୋର ତ ଏହା ନ୍ୟାଯ୍ୟ ଦାବି ନୁହେଁ ? ଏଥିରୁ କହିଲ ଦେଖି, ଦୁର୍ଯ୍ୟୋଧନ ନୀତି ଭଲ, ନା ଭରତଙ୍କ ନୀତି ଭଲ ?

ସ୍ତ୍ରୀ—ଭରତଙ୍କ ନୀତି ଭଲ !

ସ୍ୱାମୀ—ଠିକ୍ ବୁଝିଛ, ମନରୁ କପଟ ଛାଡ଼ିଲେ ଶତ୍ରୁ ମଧ୍ୟ ଆପଣାର ହୁଏ ।

ସ୍ତ୍ରୀ—ତମେ ଯାହା କହିଲ ସତ, ମାତ୍ର କଳିକାଳରେ ଏ କଥା କିଏ କରି ପାରୁଛି ?

ସ୍ୱାମୀ—ଆହେ, ନ କରି ପାରିବାରୁ ତ ଏତେ ଗୋଳମାଳ ହେଉଛି !

ସ୍ତ୍ରୀ—ଆଗେ ତ ହେଉ ନ ଥିଲା, ଏବେ କାହିଁକି ହେଉଛି ?

ସ୍ୱାମୀ—ଏବେ ଲୋକମାନଙ୍କ ମନରୁ ଧର୍ମ ବିଶ୍ୱାସ କ୍ରମେ ଉଠି ଯାଉଛି; ଧର୍ମଶାସ୍ତ୍ର ପଢ଼ିବା, ଶୁଣିବା ଓ ଆଲୋଚନା କରିବା ଏକାବେଳକେ ବନ୍ଦ ହୋଇ ଆସୁଛି । ଆଗେ ଗ୍ରାମେ ଗ୍ରାମେ ଭାଗବତଘର ଥାଇ ଭାଗବତ ପାଠ ହେଉଥିଲା, ତାହା ଏବେ କ୍ରମେ କମି ଯାଉଛି । ଲୋକମାନେ କେବଳ ଅସତ୍ କଥାରେ ମନ ବଳାଉଛନ୍ତି । ଭଲ କଥା କାନରେ ନ ପଡ଼ିଲେ ଲୋକର ମନ ମନ୍ଦ ଦିଗକୁ ଯାଏ । ଯେଉଁମାନେ ପଢ଼ାଶୁଣା କଲେ, ସେମାନେ ଯେବେ ଏ ଦିଗକୁ ଦୃଷ୍ଟି ଦିଅନ୍ତେ, ତେବେ ତଥିଲା କାର୍ଯ୍ୟ ହୁଅନ୍ତା ।

ସ୍ତ୍ରୀ—ହଁ, ସେ କଥା ତ ହୁଅନ୍ତା । ଏବେ ଆମ କଥା କଣ କହୁଛ କହିବଟି ?

ସ୍ୱାମୀ—ଏତେ କଥା ଶୁଣି ପୁଣି କଣ ପଚାରୁଛ ? ତମେ ଭଲ ବ୍ୟବହାର କର, ସବୁ ଶାନ୍ତ ହୋଇଯିବ ।

ସ୍ତ୍ରୀ—ମୁଁ କଣ ଭଲ ବ୍ୟବହାର କରିବି ?

ସ୍ୱାମୀ—ଦେଖ, ବଡ଼ ଯାଆ ସାନ ଯାଆମାନଙ୍କୁ ଅପଣା ଭଉଣୀ
ପରି ମଣିବ । ସେହି ଦୃଷ୍ଟିରେ ସେମାନଙ୍କ ସହିତ ବ୍ୟବହାର
କରିବ । ଶାଶୁ ବୋହୂମାନଙ୍କୁ କନ୍ୟା ତୁଲ୍ୟ ମଣିବ । ବଡ଼
ଭାଇ ସାନ ଭାଇମାନଙ୍କୁ ପୁତ୍ର ତୁଲ୍ୟ ମଣିବ । ଏପରି କଲେ
ତ ଆଉ କିଛି ଗଣ୍ଡଗୋଳ ରହିବ ନାହିଁ ! ଆମର ପୁରାତନ
ହିନ୍ଦୁସମାଜର ଏହିପରି ଆଦର୍ଶ ଥିଲା ଏବଂ ପରିବାର ମଧ୍ୟରେ
ଲୋକେ ଚାଲୁଥିଲେ । ଘରର ଗୃହିଣୀ ଗୃହଲକ୍ଷ୍ମୀ ଥିଲେ ଏବଂ
ସେ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖୁଥିଲେ । ସୁତରାଂ ହିନ୍ଦୁ
ସମାଜ ସ୍ୱର୍ଗରେ ପରିଣତ ହୋଇଥିଲା ! ଏବେ ନବ୍ୟସଭ୍ୟ
ହୋଇ ସ୍ତ୍ରୀମାନେ କହିଲେ, ତାଙ୍କ ସ୍ୱାମୀ ଛଡ଼ା ଅନ୍ୟ କାହା
ସହିତ ତାଙ୍କର କି ସମ୍ପର୍କ ?

ସ୍ତ୍ରୀ—ମୁଁ ତ ସେଥିଲାଗି କହୁଥିଲି, ତମକୁ କହିବା ଯାହା ବାଉଁଶଠେ
ବସି କାନ୍ଦିବା ତାହା ! ମୁଁ ଯାଉଛି, ତାଙ୍କର ସହିତରେ ରହି
ସଢ଼ି ମରିବ !

ସ୍ୱାମୀ—ଛି ଛି ! ତମର ଏପରି ବୁଝିବା ଉଚିତ ନୁହେଁ ! ଆପଣା
ଆତ୍ମୀୟ ସ୍ୱଜନମାନଙ୍କୁ ନେଇ ଯେ ଚଳି ପାରିଲା, ସେ ତ ମହା
ସୁଖର କଥା—ଏ କଥା ତ ଦୁଃଖର କଥା ନୁହେ । ହିନ୍ଦୁ-
ମାନଙ୍କ ଗୃହସ୍ଥାଶ୍ରମ ଗୋଟିଏ ପୁଣ୍ୟ ପବିତ୍ର ଶିକ୍ଷାମନ୍ଦିର ।
ଏଠାରେ ସମସ୍ତ ପରିବାର ଏକତ୍ର ଚଳିଲେ ବହୁତ କଥା
ଶିକ୍ଷା କରାଯାଏ । ସେଥିଲାଗି ଭଗବାନ ଅର୍ଜୁନଙ୍କୁ କହିଥିଲେ—

"ଗୃହସ୍ଥାଶ୍ରମରେ ରହି ଯେ ଧର୍ମ ଆଚରି
ଏ କଥା ଗୋଟିକୁ ପାର୍ଥ ! କେହି ନୁହେ ସରି ।"

ସ୍ତ୍ରୀ—ଗୃହସ୍ଥାଶ୍ରମରୁ କଣ ଶିଖିବ ମ ?

ସ୍ୱାମୀ—ଗୃହସ୍ଥାଶ୍ରମରେ ରହିଲେ ନାନା ପ୍ରକୃତିର ଲୋକମାନଙ୍କୁ ନେଇ ଚଳିବାକୁ ହେବ—କେହି ରାଗୀ, କିଏ ନିଷ୍ଠୁର, କିଏ ନିର୍ଦ୍ଦୟ, କିଏ ଲୋଭୀ, କିଏ କାମୀ, କିଏ ଦୟାଳୁ ଇତ୍ୟାଦି ନାନା ପ୍ରକାର । ଗୃହସ୍ଥ ଓ ଗୃହିଣୀ ଉଭୟଙ୍କୁ ସମସ୍ତଙ୍କ ପ୍ରକୃତି ସହିତ ଆପଣା ପ୍ରକୃତିର ସାମଞ୍ଜସ୍ୟ ରଖି ଚଳିବାକୁ ପଡ଼ିବ । ଆପଣାର ପ୍ରବୃତ୍ତିମାନଙ୍କୁ ଦମନ କରିବାକୁ ପଡ଼ିବ । ହିଂସା, କ୍ରୋଧ ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ପ୍ରଭୃତି ରିପୁମାନଙ୍କୁ ଦମନ କରି ସମସ୍ତଙ୍କୁ ସମାନ ଚକ୍ଷୁରେ ଦେଖିବ, ଆପଣା ସୁଖରେ ଜଳାଞ୍ଜଳି ଦେଇ ଅନ୍ୟ ସୁଖ ଦେଖିବ । ଏହିପରି ଅଭ୍ୟାସଦ୍ୱାରା ଲୋକ ଉଦାରମନା ହୋଇ ବହୁତ ଲୋକଙ୍କୁ ଆପଣାର କରି ପାରିବ । ଏ ତ ପ୍ରଧାନ ଧର୍ମ ଏବଂ ଜୀବନର ମୁଖ୍ୟ ଉଦ୍ଦେଶ୍ୟ ! ଆଉ ସଂସାରରେ ଅଧିକ କଣ ଅଛି ? ମଣିଷ ତ ଅପେ ଖାଇ ମରିବାକୁ ଜନ୍ମ ହୋଇ ନାହିଁ ! ମଣିଷ ଏ ସଂସାରକୁ ଆସିଛି । ଶିକ୍ଷା କରିବା ମନୁଷ୍ୟର ପ୍ରଧାନ ଧର୍ମ । ଏହି ଶିକ୍ଷାଲାଗି ଗୃହସ୍ଥାଶ୍ରମହିଁ ପ୍ରଧାନ ସ୍ଥାନ । ମନୁଷ୍ୟ ଅନ୍ୟମାନଙ୍କ ସହବାସରେ ନ ରହି ଏକୁଟିଆ ବାଘ ପରି ଚଳିଲେ ଆଉ ଶିଖିବ କଅଣ ?

ସ୍ତ୍ରୀ—ମୁଁ ଆଉ ତମ କଥାକୁ ପାରିବି ନାହିଁ । କେଉଁଠା କଥା ଆସି କେଉଁଠାରେ ଉଠିଲାଣି ମ ?

ସ୍ୱାମୀ—ମୁଁ ତ ନୂଆ କଥା କିଛି କହୁ ନାହିଁ ? ଆମ ଧର୍ମ ଅନୁସାରେ କୌଣସି ଲୋକ ପରିବାର ମଧ୍ୟରୁ ଛୋଟା, କେଙ୍ଗା, କଣା, କୁଜା, ରୋଗୀ, ଅସମର୍ଥ, ଦୁଃଖୀ ବା ଅକ୍ଷମ ହେଲେ ଅନ୍ୟମାନେ ଆନନ୍ଦସହକାରେ ଅକୁଣ୍ଠିତ ଚିତ୍ତରେ ତାକୁ ପୋଷନ୍ତି । ଜଣେ ରୋଜଗାର କଲେ ସମସ୍ତଙ୍କୁ ଚଳାଇନିଏ, ଏହା ଉଦାରଭାବର ପରିଚାୟକ ନୁହେ କି ? ଅର୍ଜନକାରୀ ଏଥିଲାଗି ମନରେ

କୌଣସି ଗର୍ବ କରେ ନାହିଁ । ତାହାର ବିଶ୍ୱାସ—ଧର୍ମାନୁସାରେ ସେ ସେମାନଙ୍କୁ ପାଳିବାକୁ ବାଧ୍ୟ !

ସ୍ତ୍ରୀ—ଅଗୋ, ଏତେ ସବୁରେ କଥା ଅଛି ବୋଲି କାଏ ଜାଣେ ସ ? ତେବେ ଏତେ ଲୋକ ଭିଟନ ହେଉଛନ୍ତି କାହିଁକି ?

ସ୍ୱାମୀ—ଆମ୍ଭମାନଙ୍କ ଅବନତିର ତାହା ଲକ୍ଷଣ । ଯେତେ ଦିନଯାଏ ଏ ଭାବ ଥିବ, ସେତେ ଦିନଯାଏ ଆମ୍ଭମାନଙ୍କର ଉନ୍ନତି ହେବ ନାହିଁ । ଅଜି ଏତିକି ଥାଉ, ମୁଁ ଯାଉଛି ।

---

## ଦଶମ ପରିଚ୍ଛେଦ

ସ୍ତ୍ରୀ—ହଇ ହୋ, କହୁଥିଲ ପରା ପୁଅ ଏଥର କଣ ପାଶ୍ କରିବ; ପାଶ୍ କଲେ ତା ପାଠପଢ଼ା ସରିବ ?

ସ୍ୱାମୀ—ହଁ, ଏଥର ସେ ଏମ୍. ଏ. ପାଶ୍ କରିବ । ପାଠର କଣ ସୀମା ଅଛି ଯେ ପଢ଼ା ସରିଯିବ ?

ସ୍ତ୍ରୀ—ତେବେ କଣ ଆହୁରି ପଢ଼ିବ ?

ସ୍ୱାମୀ—ପଢ଼ିବାକୁ କଣ ପାଠ ନାହିଁ ? ତେବେ ଆଉ ବେଶି ପଢ଼ାଇବାକୁ ଆମର ବଳ ନାହିଁ । ଏଣିକି କିପରି ସଂସାର ଚଳିବ, ତାର ବ୍ୟବସ୍ଥା କରିବା ଆବଶ୍ୟକ । ବିଦ୍ୟା ତ ଅସୀମ, ଗଣେଶ ତ ସବୁ ପଢ଼ି ପାରିଲେ ନାହିଁ; ଆଉ ମଣିଷ କଥା କଣ କହୁଛ ? ଜୀବନ ବିତିଗଲେ ବି ବିଦ୍ୟାଚର୍ଚ୍ଚା ଶେଷ ହେବ ନାହିଁ ।

ସ୍ତ୍ରୀ—ଆମ ପୁଅ ଏମ୍. ଏ. ପାଶ୍ କରିବ ବୋଲି କହୁଛ. ସେ ପାଶ୍ କରି ପାରିଲେ କେତେ ଟଙ୍କାର ଚାକିରି ପାଇବ ?

ସ୍ୱାମୀ—ମୁନ୍‌ସଫ୍ କଲେ ଅତି ବଡ଼ ହେଲେ ୮ ୫୦ ଙ୍କା କି ୮୬୦ଙ୍କା ମାସକୁ ପାଇବ ।

ସ୍ତ୍ରୀ—କି କଥା କହୁଛ ମ ? ତେମେ ତ ତା ପିଛରେ ପଞ୍ଚ ହଜାର ଟଙ୍କା ଖର୍ଚ୍ଚ କଲଣି । ତେମେ ଯାହା ରୋଜଗାର କଲ ସବୁ ତ ତା ପିଛରେ ଲଗାଇଲ, ଏଣେ ଘର ସମ୍ପତ୍ତି ଯାହା ହେଲା, ତା ବି ତା ଖର୍ଚ୍ଚରେ ଲଗିଲା ! କହୁଛ କଣ ନା ମାସକୁ ୮ ୫୦ଙ୍କା ପାଇବ ! ସେ କେତେ ଖର୍ଚ୍ଚ କରିବ, ଆଉ ଆମକୁ କେତେ ଦେବ ମ ?

ସ୍ୱାମୀ—ଆମକୁ ଦେବ ନା, ଆମେ ପୁଣି ତାକୁ ଦେଲେ ସେ ଚଳିବ, ତା ପଛେ ବୁଝିବ ?

ସ୍ତ୍ରୀ—କାହିଁକି ମ ? ଆମେ ପୁଣି ଏତେ କାଳ ପଇସା ଖର୍ଚ୍ଚ କରି ପାଠ ପଢ଼ାଇଲେଣି, ପୁଣି ସେ ମୁନ୍‌ସଫ୍ କଲେ ଟଙ୍କା ପଠାଇବା ? କାହିଁକି ଏମନ୍ତ ପାଠ ପଢ଼ାଉଥିଲ ମ ? ଆଗେ ଯେଉଁମାନେ ଇଂରେଜି ପାଠ ପଢ଼ି ଡିପୋଟି, ହାକିମ, ଓକିଲ ହେଉଥିଲେ, ସେମାନେ କେତେ ସମ୍ପତ୍ତିବାଡ଼ି କରିଛନ୍ତି, ଆମ ପୁଅଠାରୁ ଅଳ୍ପ ପାଠ ପଢ଼ି ମଧ୍ୟ ବେଶି ସମ୍ପତ୍ତି କଲେ; ତେମେ କହୁଛ କି କଥା ମ ?

ସ୍ୱାମୀ—ଆହେ- ସେ କାଳ ଚାଲି ଆଉ ନାହିଁ, ସେକାଳରେ ଅଳ୍ପ ଲୋକ ପଢ଼ୁଥିଲେ ବୋଲି ତାଙ୍କୁ ଆଦର ପଡ଼ୁଥିଲା, ଏବେ ତ ଯେ-ସେ ପଢ଼ିଲେ, ଏବେ ତ ମୁନ୍‌ସଫୀ ଖଣ୍ଡେ ଖୋଲିଲେ ଶହ ଶହ ଲୋକ ଦରଖାସ୍ତ ଦେଇ ବାଡ଼ାବାଡ଼ି ହେଉଛନ୍ତି ସରକାର ଏତେ ମୁନ୍‌ସଫ୍ ଆଣିବେ କେଉଁଠୁ ? ମୁନ୍‌ସଫୀକୁ ମୁହଁ ବସିଲେ ଆଉ ଚଳିବ ନାହିଁ । ତମ ପୁଅଙ୍କର ଇଚ୍ଛା କଣ ?

ସ୍ତ୍ରୀ—ପୁଅର ଇଚ୍ଛା ଗୋଟେ ହାକିମ ହେବ ।

ସ୍ୱାମୀ—ଅଛି, ତାଙ୍କୁ ·ପଚାରିଲ ନାହିଁ, ଚାକିରି କରିବାକୁ ସେ କାହିଁକି ଛଟପଟ ହେଉଛନ୍ତି ? ପାଠ ତ ପଢ଼ିଛନ୍ତି, ବୁଦ୍ଧି ଶୁଦ୍ଧି ଅଛି, ବିଜ୍ଞାନ ପ୍ରଭୃତି ପଢ଼ିଛନ୍ତି, ଆପଣା ଜମି ବାଡ଼ି ବୁଝା ଶୁଝା କରନ୍ତୁ !

ସ୍ତ୍ରୀ—ସେ କଣ ତା କରିବ ? ଏତେ ପାଠ ପଢ଼ି କଣ ଶେଷରେ ଏଇଆ କରିବ ?

ସ୍ୱାମୀ—ଏ କାମ କଲେ କଣ ଲାଜ ମାଡ଼ିବ ?

ସ୍ତ୍ରୀ—ଲାଜ ମାଡ଼ିବ ନାହିଁ ? ଚଉକି ଉପରେ ବସି ହାକିମ ହୋଇ ଯେତେବେଳେ ହୁକୁମ ଦେଉଥିବ, ସେତେବେଳେ କେତେ ଲୋକ 'ହଜୁର ହଜୁର' ବୋଲି ଚାହିଁ ରହିଥିବେ ! ଏଥିରେ କାହାରି ନାମ ହେବ, ଆଉ ବିଲ ମୁଣ୍ଡକୁ ଗଲେ କି ନାମ ବାହାରିବ ?

ସ୍ୱାମୀ—ବାସ୍ତବିକ କଥା, ଚାକିରି ନ କଲେ ଆମର ମାନ ମହତ୍ତ୍ୱ ରହିବ କେଉଁଠି ? ଆମ ଘରେ ଯେଉଁ ମଦନା ଚାକର ଅଛି, ସେ କଣ କରେ ଜାଣିଛ ?

ସ୍ତ୍ରୀ—ନା, ଜାଣି ନାହିଁ; କହିଲ ଦେଖି ?

ସ୍ୱାମୀ—ସେ ଦାଣ୍ଡକୁ ବାହାରିଲା ବେଳେ ଖଣ୍ଡେ ଧୋବଲୁଗା ପିନ୍ଧେ, ଖଣ୍ଡେ କୋଟ ଲଗାଏ, ଧୋବ ·ଶାନ୍ତିପୁରୀ ଚଦର ଦେହରେ ପକାଏ । ଆମ ଦାଣ୍ଡଦୁଆର ଡେଇଁ ପଡ଼ିଲାରୁ ଛାତି ଫୁଲାଇ ବାଟ ଚାଲେ । ହାତରେ ଖଣ୍ଡେ ବଙ୍କା ବାଡ଼ି ମଧ୍ୟ ଧରି ହୋଇ ଥାଏ । ତାହା କଥା କଣ ଶୁଣିମ ? ଅମୁକ ବାବୁଙ୍କ ଚାକର ବୋଲି କେତେ ଗର୍ବ ! ଲୋକେ ଡର କରି ଅଡ଼େଇ ହୋଇଯାନ୍ତି, କାଳେ ତାକୁ କିଛି କହିଲେ ସେ ଯାଇ ତା ବାବୁଙ୍କ ଆଗରେ କହି ଦେବ ! ତା ବାବୁ ତ ବଳଆର

ହାକିମ, ଶୁଣିଲେ ଆମକୁ ଭୋଜ ଦଣ୍ଡ ନାହିଁ ଭୋଜ ଦଣ୍ଡ ଦିଆଇବେ ! ବାବୁଙ୍କ ଦଳରେ କାହାକୁ କଣ କହେ । ତା ହିସାବରେ ନଶିତ ଗୁଡ଼ାକ ପଶୁ ପକ୍ଷୀ ତୁଲ୍ୟ; କିନ୍ତୁ ଘରକୁ ଆସିଲାରୁ ଯେଉଁ ଚାକରକୁ ସେହି ଚାକର ! ବାବୁଙ୍କ ହାକିମି, ବାବୁଆଣୀଙ୍କ ହାକିମି, ବାବୁଙ୍କ ପୁଅ ଝିଅ କୁଟୁମ୍ବ ସମସ୍ତଙ୍କ ହାକିମି ତା ଉପରେ ! କାମରେ ତ୍ରୁଟି ହେଲେ ଗାଳି ଫଜିତ ମାଡ଼, ଦୂରଦୂର ମାରମାର, ଛି ଛି କର, ଛେଛେ କଥା ଶୁଣେ ! ସବୁ ବରଦାସ୍ତ କରେ, ଉତ୍ତର ଦେଲେ ଚାକର ଗଲା, ତେଣେ ବଂଶ ମଲେ ! ମୁଣ୍ଡ ନୁଆଁଇ ସବୁ ସହେ ! କିନ୍ତୁ ନାରଣ ସାଉ କଣ କରେ ଜାଣ ? ଦଶ ପାଞ୍ଚ ଟଙ୍କାର ଗୋଟିଏ ସାମାନ୍ୟ ଦୋକାନ କରିଛି ! ସାଆନ୍ତ ହୋଇ ଦୋକାନରେ ବସିଥାଏ, ବିକା କିଣା କରେ, ଲାଭରୁ ଆପଣାର କୁଟୁମ୍ବ ପୋଷେ ! କେହି କହିବାକୁ ନାହିଁ, କାହାର ସହିବାକୁ ନାହିଁ, ଆପଣା ଘରେ ଆପେ ରଜା, ନିଶ୍ଚିନ୍ତରେ ଖାଇ ପିଇ ଥାଏ, ଗୀତ ବୋଲେ, ମନ ଖୁସିରେ କାଳ କାଟେ, ତେବେ ନାରଣକୁ କେହି ବାବୁ ବୋଲି ଗଣନ୍ତି ନାହିଁ, ସଭା ସମିତି ଦରବାରକୁ ଡାକନ୍ତି ନାହିଁ, କାରଣ ସେ ଇଂରେଜୀ ପଢି ନାହିଁ, ଚୁଟି କାଟି ନାହିଁ, କି ଜୋତା ମାଡ଼ି ନାହିଁ ! ଅଚ୍ଛା ଶୁଣିଲ ତ, ଏଥିରୁ କେଉଁଟି ଭଲ କହିଲ ଦେଖି ? ଚାକିରି ଭଲ, ନା ବ୍ୟବସାୟ ଭଲ ?

ସ୍ତ୍ରୀ—ଅଚ୍ଛା, ସରକାରି ଚାକିରୀ ଓ ମଦନା ଚାକିରୀ, ଏ କଣ ସମାନ ?

ସ୍ୱାମୀ—ଚାକିରୀରେ ସାନ ବଡ଼ କିଛି ନାହିଁ । ଅବସ୍ଥା ସବୁଠାରେ ସମାନ । ଯେ କୌଣସିଠାରେ ଚାକିରୀ କର, ମୁଣ୍ଡ ଉପରେ

ଗୋଟିଏ ଅଙ୍କୁଶ ଝୁଲୁଥାଏ । ଚାକିରି କଲେ ନିଜର ସ୍ୱାଧୀନତା ଲୋପ ହୁଏ, ଖାମିନ୍ଦ ମରଜି ଜଗି କାମ କରିବାକୁ ପଡ଼େ, ବିବେକକୁ ଜଳାଞ୍ଜଳି ଦେବାକୁ ହୁଏ, ଖାମିନ୍ଦ ଯାହା କହେ ତାହା କରିବାକୁ ପଡ଼େ, ନ କଲେ ଅବାଧ୍ୟତା ଦୋଷରେ ଦୋଷୀ, କୋଠାମାଡ଼ ତିରସ୍କାର ଇତ୍ୟାଦି । ମୁଁ ମୋର ଚାକର ପ୍ରତି ଯେ ବ୍ୟବହାର କରେ, ସରକାର ତାଙ୍କ ଚାକର ପ୍ରତି ସେହି ବ୍ୟବହାର କରନ୍ତି, ନ କରନ୍ତି କାହିଁକି ? ତେବେ ପ୍ରକାର ଟିକିଏ ପ୍ରଭେଦ । ଆମେ ଆମ ଚାକରକୁ ମୁହେଁ ମୁହେଁ ଗାଳି କଥା ଶୁଣାଇ ଦେଉଁ, ମାତ୍ର ସରକାରୀ ଉପରସ୍ଥ କର୍ମଚାରୀମାନେ କେହି କେହି ମୁହେଁ ମୁହେଁ ଶୁଣାଇ ଦିଅନ୍ତି, କେହି ବା କାଗଜ କଲମରେ ଶୁଣାଇ ଦିଅନ୍ତି । ଚାକିରିରେ ଆତ୍ମ ସମ୍ମାନ ରହିପାରେ ନାହିଁ । ତମେ କଣ ମନେ କରୁଛ ବାଣିଜ୍ୟ ବ୍ୟବସାୟରେ ଯାହା ଲାଭ ମିଳିବ, ଚାକିରିରେ ସେହି ଲାଭ ମିଳିବ ?

ସ୍ତ୍ରୀ—ଚାକିରି କରନ୍ତି ଲୋକେ କାହିଁକି ?

ସ୍ୱାମୀ—ମୁଁ କଣ କହୁଛି ଚାକିରିଟା ଏ ରାଜ୍ୟରୁ ଉଠିଯିବ ? ଚାକିରି ଅବଶ୍ୟ ପେଟ ପାଳିବାର ପନ୍ଥା । ଯେଉଁମାନେ ଅନ୍ୟ ବାଣିଜ୍ୟ ବ୍ୟବସାୟ କରିବାକୁ ଅସମର୍ଥ, ସେମାନେ ଚାକିରି ନ କଲେ ଚଳିବେ କିପରି ? ଚାକିରି ନ କଲେ ଦୁନିଆରେ କାମ ଚଳିବ କିପରି; ସରକାରୀ କାମ ଚଳିବ କିପରି ? କେତେ ଜଣ ଅବଶ୍ୟ ଚାକିରି କରୁଛନ୍ତି, କରିବେ, ସେଟା ଧନ ଉପାର୍ଜନର ନିକୃଷ୍ଟ ପନ୍ଥା । ଚାକିରିଦ୍ୱାରା ଦେଶରେ ଧନ ହେବ ନାହିଁ । ଚାକିରି କରି ଦେଶୋଦ୍ଧାର ହେବ ନାହିଁ । ଭଲ ମନ୍ଦ କଥା ପଢ଼ିନୁ ସିନା ? ପୂର୍ବକାଳରୁ କଥା ଅଛି—

"ବାଣିଜ୍ୟେ ବସତେ ଲକ୍ଷ୍ମୀଃ ତଦର୍ଦ୍ଧଂ କୃଷିକର୍ମଣି
ତଦର୍ଦ୍ଧଂ ରାଜସେବାୟାଂ ଭିକ୍ଷା ନୈବଚ ନୈଚ "।

—ଅର୍ଥାତ୍ ବାଣିଜ୍ୟ ବ୍ୟବସାୟ କଲେ ଲକ୍ଷ୍ମୀ ସ୍ୱୟଂ କରଗତ ହୁଅନ୍ତି । ବାଣିଜ୍ୟ କଲେ ଲୋକ ଯେଉଁଠି ଟଙ୍କାଏ ପାଇବ, କୃଷି କଲେ ଅଠଅଣା ପାଇବ, ଚାକରୀ କଲେ ଚାରିଅଣା ପାଇବ, ମାତ୍ର ଭିକ୍ଷା କଲେ ଲାଭ କିଛି ନାହିଁ, ବରଂ ସମୟରେ ଅଧପେଟ ପୂରିବ ନାହିଁ ।

ସ୍ତ୍ରୀ—ତେବେ ଆମ ଦେଶ ପିଲାଏ ବାଣିଜ୍ୟ ବ୍ୟବସାୟ କରୁ ନାହାନ୍ତି କାହିଁକି ?

ସ୍ୱାମୀ—ଏମାନଙ୍କୁ ସେ ବୁଦ୍ଧି ଦିଶୁ ନାହିଁ । ପିଲାଦିନୁ ବେଞ୍ଚ ଚୌକି ଉପରେ ବସି ଗୋଡ଼ ହଲାଇ ପାଠ ପଢ଼ିଲେ । କିରାସିନି ତେଲ ଡିବି ଜାଳି ବହିକୁ ଗୁହିଁ ଗୁହିଁ ଜଳକା ହେଲେ । ଯେ କୌଣସି ପ୍ରକାରରେ ପାଞ୍ଚଟା ଛଅଟା କଥା ମୁଖସ୍ଥ କରି ପରୀକ୍ଷାବେଳେ ସେତକ ବାନ୍ତି କରି ପାଶ୍ କଲେ । ଏଥି ସାଥିରେ ଶିଖିଲେ କେତେ ବାବୁଗିରି କଥା—ମୁଣ୍ଡରେ ତେଲ କାନି ସୁନ୍ଦର ପାରିବା, ରୁମାଲ୍ ଖଣ୍ଡିଏ ଧରି ଅସମୟ ସମୟରେ ମୁହଁ ପୋଛିବା, କୁରୁତା, ଯୋତା ପିନ୍ଧିବା ଇତ୍ୟାଦି କେତେଗୁଡ଼ିଏ ଅଭ୍ୟାସ ! ପାଠ ମଧ୍ୟରେ ଯାହା ଯାହା ପଢ଼ିଥିଲେ ସେ ସବୁ ବହିର ଗଳ୍ପ; ଧାର ରହିଲା—ଦରଖଣ୍ଡିଆ କରି ଦି ପଦ ଇଂରେଜି କହିବା ଏବଂ ଭୁଲଭାଲ୍ କରି ଦି ଧାଡ଼ି ଇଂରେଜି ଲେଖିବା । ଅଜି ଏ ପାଠୁଆଙ୍କୁ କଣ ଅସେ ? ଅପଣା ମାତୃଭାଷା ଓଡ଼ିଆରେ ଖଣ୍ଡେ ଚିଠି ଲେଖିବାକୁ ପୁଅକୁ କହିଲ ଦେଖି, କଣ କହିବେ ?

ସ୍ତ୍ରୀ—ସତ କହୁଛ; ମୁଁ ଦିନେ ପୁଅକୁ ଖଣ୍ଡେ ଓଡ଼ିଆରେ ଚିଠି ଲେଖି ଦେବାକୁ କହିଲି ଯେ, କହିଲା, ମତେ ଅସିବ ନାହିଁ ।

ଅଛି, ତେବେ ଏତେ ଦୂର ପକାଉଛ କାହିଁକି ସମସ୍ତେ ପାଠ
ପଢ଼ନ୍ତୁ ବୋଲି ?

ସ୍ୱାମୀ—ଦୂର ପଢ଼ନ୍ତୁ ସତ ! ସମସ୍ତଙ୍କର ମୂର୍ଖତା ଦୋଷ ଯିବା ଭଲ;
ତେବେ ଯେତେ ଧନଯାଏ ବାଣିଜ୍ୟ ବ୍ୟବସାୟ କରିବାକୁ
ପିଲାଙ୍କ ମନ ନ ଯିବ, ତେତେ ଧନଯାଏ କିଛି ହେବ ନାହିଁ ।
କେତେ ଜଣ ଚାକିରି କରି ପେଟ ପୋଷିବେ ?

ସ୍ତ୍ରୀ—ପିଲାମାନଙ୍କ ମନ ସେ ଆଡ଼କୁ ଯାଉ ନାହିଁ କାହିଁକି ?

ସ୍ୱାମୀ—ପିଲାମାନେ ସେପରି ଶିକ୍ଷା ପାଉ ନାହାନ୍ତି । ମାଆମାନେ ତ
ପିଲାଙ୍କ କାନରେ ଫୁଙ୍କିଲେ "ତୁ ବଡ଼ ହେଲେ ହାକିମ
ହେବୁ, ଚାକିରି ପାଇବୁ, ବହୁତ ଟଙ୍କା ଆଣିବୁ;" ତାଙ୍କ ମନ
ସେ ଆଡ଼କୁ ଗଲା । ଆହୁରି ପୁଣି ଏକ ଦୋଷ—ମାଷ୍ଟରମାନେ
ସ୍କୁଲରେ ସେପରି ଉପଦେଶ ଦେଉ ନାହାନ୍ତି ।

ସ୍ତ୍ରୀ—ଅଛି, ତେବେ ତମେ କହୁଛ ପୁଅ ଚାକିରି କରିବ ନାହିଁ—
କଣ କରିବ ସେ ?

ସ୍ୱାମୀ—ଏ ସଂସାରରେ କଣ ସମସ୍ତେ ଚାକିରି କରୁଛନ୍ତି ? କିଏ
ଦୋକାନ କରି ପଇସା ଜମା କରୁଛି, କିଏ ଚାଷବାସ କରୁଛି,
କିଏ ନାନା ପ୍ରକାର ଶିଳ୍ପ କାର୍ଯ୍ୟ କରୁଛି, ଇତ୍ୟାଦି କେତେ
ବାଟ ପଡ଼ିଛି । ଆଛା, ତମେ ତ ଦେଖୁଛ—ଆମ ଘରେ
ଯେଉଁ ଘଣ୍ଟା ଅଛି, ଲଣ୍ଠନ ଅଛି, ଛୁରୀ କଇଁଚି ଅଛି; ସେ ସବୁ
ଜିନିଷକୁ କେହି ତ ବୁଦ୍ଧି ଖର୍ଚ୍ଚ କରି କରୁଛି । ଯେ କରୁଛି ସେ
କେତେ ପଇସା ଆମ ଦେଶରୁ ତା ଦେଶକୁ ଟାଣି ନେଉଛି ?
ଆମେ ତ ସେହି ମଣିଷ, ଆମେ ତ ପାଠ ପଢ଼ିଲେଣି, ଆମକୁ
ତ ଈଶ୍ୱର ବୁଦ୍ଧି ଦେଇଛନ୍ତି, ଆମେ ମନ ବଳାଇଲେ କଣ
ଏପରି କିଛି ନୂତନ ଜିନିଷ ପ୍ରସ୍ତୁତ କରି ପାରିବା ନାହିଁ ?

ଅବଶ୍ୟ ପାରିବା । କିନ୍ତୁ ଆମ ପିଲାଏ କହନ୍ତି, କେତେ ପରିଶ୍ରମ କିଏ କରୁଛି ? କାନରେ କଲମ ଖୋଷି କଚେରୀକି ଯାଇ ସଞ୍ଜବେଳକୁ ଗୁରି ପଇସା ଅଣ୍ଟାରେ ମାରି ଆସିଲେ ଗଲା !

ସ୍ତ୍ରୀ—ଯେଉଁମାନେ ଚାକିରୀ କରି ପଇସା ଆଣୁଛନ୍ତି, ସେ ପଇସା-ଗୁଡ଼ାକ ତ ଆଉ କିଏ ନେଇ ଯାଉଥାନ୍ତା, ଆମ ଦେଶ ଲୋକ ଆମ ପଇସା ପାଇଲେ ଭଲ ହେଉ ନାହିଁ ?

ସ୍ୱାମୀ—ଆମ ଦେଶ ପଇସା ଆମ ଦେଶରେ ରହିଲା—କିପରି ମ ? ଆମେ ଚାକିରୀ କରି ଯେଉଁ ପଇସା ଆଣୁ, ସେଥିରୁ ଚଉଦପଣ ଲୁଗା, ଲଣ୍ଠନ ଇତ୍ୟାଦି ହରେକ ରକମର ଅନ୍ୟ ଦେଶରେ ତିଆରି ହେଉଥିବା ଜିନିଷ କିଣାରେ ଯାଉଛି—ସେ ପଇସା କଣ ଆଉ ଫେରୁଛି ? ସେ ଗଲା ତ ସେ ଆଡ଼େ ରହିଲା ! ଆମ ଦେଶ ଲୋକେ ଯେବେ ଆମ ଆବଶ୍ୟକ ଜିନିଷ ତିଆରି କରୁଥାନ୍ତେ, ତେବେ ସିନା ସେ ପଇସା ଆମ ଦେଶରେ ରହନ୍ତା ?

ସ୍ତ୍ରୀ—ହଇ ଗୋ, ଆମେ ମାଇପି ଲୋକେ ଏତେ ସନ୍ଧିକଥା କେଉଁଠୁ ଜାଣିବୁ ମ ? ସତ ତ, ଆମେ ମିଛରେ ଚାକିରୀ କରି ପଇସା ଆଣୁଥାଇଁ ବୋଲି ନାଚି କୁଦି ହେଉଥାଉଁ, କିନ୍ତୁ ଦେଖୁଛୁ ଭୂମୁରି ଗାଣ୍ଠି ଫେଲ !

ସ୍ୱାମୀ—ଠିକ୍ କହିଲ, ଯେଉଁଥିରେ ଅନ୍ୟ ଦେଶରୁ ପଇସା ଆଣି-ପାରିବା, ତା କଲେ ସିନା ହେବ । ଏପରି ଲକ୍ଷ ଲକ୍ଷ ଲୋକ ପୋଥି ପଢ଼ିଲେ କଣ ହେବ ? ଦେଖ—ପିଲାମାନଙ୍କ ମନ ମୂଳରୁ ଗଢ଼ିବାକୁ ହେବ । ଆଗେ ମାଆମାନେ ପିଲାଙ୍କ ଆଗେ ବୋଇତ, ବଣିଜ ଓ ସାଧବ ଘର କଥା କେତେ କହୁଥିଲେ, ଏବେ ତ ଆଉ ସେ ସବୁ ଶୁଣା ନାହିଁ ? ପିଲାମାନଙ୍କ ଆଗରେ

ବ୍ୟବସାୟ ବାଣିଜ୍ୟ କଥା, ମାଲ କୁସ୍ତି କଥା, ଶିରନ୍ଧ କଥା, ଶିଳ୍ପ କଥା କହିଲେ ସେମାନଙ୍କ ମନ ସେ ଆଡ଼କୁ ଗୋଡ଼ାଇବ ।

ସ୍ତ୍ରୀ—ଆମେ କହିଲେ ହେବ ? ବାପମାନେ ସେପରି ଉପଦେଶ ଦେବା ଅବଶ୍ୟକ । ମାଷ୍ଟରମାନେ ସେପରି ଶିକ୍ଷା ଦେବା ଅବଶ୍ୟକ ।

ସ୍ୱାମୀ—ହଁ, ତା ନୁହେଁ କଣ ? ତେବେ ମାଆମାନେ ପିଲାମାନଙ୍କୁ ସେ ସବୁ କଥା ମଧ୍ୟ କହିଲେ ଅନେକ ଉପକାର ହେବ ।

ସ୍ତ୍ରୀ—ମାଆମାନଙ୍କଦ୍ୱାରା ଯେ କିଛି ନ ହେବ ତା ମୁଁ କହୁ ନାହିଁ । ଆମ ପୁଅ ତେବେ କଣ ଗୃହକର୍ମ କରିବ ନାହିଁ । ତାକୁ ଗୋଟିଏ ଦୋକାନ କରିଦିଅ, ସେ ବ୍ୟବସାୟ କରୁ ।

ସ୍ୱାମୀ—ମୋର ତ ସେହି ଇଚ୍ଛା; ତେବେ ତା ମନ୍‌ଟା ଗୋଟେ ନାକାମ ହେବାଲାଗି, ସେ ମନ ଫେରାଇବାକୁ ହେବ । ଅଚ୍ଛା ଆଜି ତାର ମୋର ପଡ଼ିବ, ତୁମେ ମଧ୍ୟ ତାକୁ ବୁଝାଇବ ।

ସ୍ତ୍ରୀ—ଅଚ୍ଛା ହେଉ ।

ସ୍ୱାମୀ—ଆଜି ଏତିକି ।

---

## ଏକାଦଶ ପରିଚ୍ଛେଦ

ସ୍ତ୍ରୀ—ହଇ ହେ, ପୁଅର ତ ଅଣି ବୟସ ହେଲା, କେବେ ତାକୁ ବାହା ଦେବ ମ ?

ସ୍ୱାମୀ—ପୁଅ କଣ ପୋଖରୀରେ ପଶି ଯାଉଛି କି ? ପୁଅର ତ ଏ ପର୍ଯ୍ୟନ୍ତ ପଢ଼ାଶେଷ ହୋଇନାହିଁ ବାହାଘର କଥା ପଡ଼ୁଛି କାହିଁ ?

ସ୍ତ୍ରୀ—ପଢ଼ା ସରି ନାହିଁ ବୋଲି ବାହାଘର ହେବାରେ କଣ ଦୋଷ ଅଛି ?

ସ୍ୱାମୀ—ଦୋଷ ନାହିଁ କଣ ? ବିବାହ କରିବା ଅର୍ଥ ଗୃହସ୍ଥାଶ୍ରମରେ ପ୍ରବେଶ କରିବା । ବିବାହ ପରେ ଲୋକର ସାଂସାରିକ ଚିନ୍ତା ମାଡ଼ିପଡେ; ମନ ଖେଳିଯାଏ, ଅପଣା କଥା ସହିତ ଅନ୍ୟ ଜଣକ କଥା ଭାବେ; ସୁତରାଂ ପାଠପଢ଼ା ପ୍ରତି ଏତେଟେ ଏକ ଗ୍ରତା ରହେ ନାହିଁ । ପାଠ ପଢ଼ିବା ଗୋଟିଏ କଠିନ ସାଧନା । କଥା ଅଛି ସାଧିଲେ ସିଦ୍ଧି ହୁଏ । ସାଧନାରେ ବାଧାବିଘ୍ନ ହେଲେ ସିଦ୍ଧି ଲାଭ ହୁଏ ନାହିଁ । ଆମ ହିନ୍ଦୁ ଶାସ୍ତ୍ରାନୁସାରେ ବର୍ଣ୍ଣାଶ୍ରମ ଧର୍ମ ପ୍ରଧାନ । ବ୍ରହ୍ମଚର୍ଯ୍ୟାଶ୍ରମ ଶେଷ ହେଲେ ଗୃହସ୍ଥାଶ୍ରମ କରିବାକୁ ହୁଏ । ୨୪ କିମ୍ବା ୨୫ ବର୍ଷ ପର୍ଯ୍ୟନ୍ତ ଗୁରୁ ଗୃହରେ ରହି ଶିକ୍ଷା ସମାପ୍ତି ପରେ ବିବାହ କରିବାର ବିଧି । ଏ ପ୍ରଥାନୁସାରେ କାର୍ଯ୍ୟ କଲେ ଲୋକ ସୁସ୍ଥ, ସବଳ ଓ ହୃଷ୍ଟପୁଷ୍ଟ ହୁଏ । ସନ୍ତାନମାନେ ମଧ୍ୟ ସେହିପରି ଶୌର୍ଯ୍ୟବୀର୍ଯ୍ୟସମ୍ପନ୍ନ ହୁଅନ୍ତି । ଏହାର ବ୍ୟତିକ୍ରମ ହେଲେ ସନ୍ତାନମାନେ କ୍ଷୀଣକାୟ, ଦୁର୍ବଳ ଓ ଅଳ୍ପାୟୁ ହୁଅନ୍ତି ।

ଆଉ ଗୋଟିଏ କଥା ଦେଖ, ଯେତେବେଳଯାଏ ତୁମେ ଅନ୍ୟ ଜଣକୁ ପୋଷିବାକୁ ସମର୍ଥ ହୋଇନାହଁ, ତେତେବେଳ ପର୍ଯ୍ୟନ୍ତ ତା ବେକରେ ଗୋଟାଏ ଛନ୍ଦ ଦେବାଟା ଠିକ୍ ନୁହେଁ ।

ସ୍ତ୍ରୀ—ଗୋଟାଏ ଛନ୍ଦଦେଲେ କଣ ତାକୁ ଖାଇବାକୁ ମିଳିବ ନାହିଁ ? ଆମର ଯାହା ସମ୍ପତ୍ତିବାଡ଼ି ଅଛି, ତାକୁଇ ଧୋଇ ଶୁଖାଇ ଖାଇଲେ କଣ ହେବ ନାହିଁ ? ପୁଅର ଧନ ଅର୍ଜନ କରିବାକୁ କ୍ଷମତା ନ ହେଲେ ବାହାଦେଲେ ଦୋଷ କଣ ମ ?

ସ୍ୱାମୀ—ଅହେ, ବସିଖାଇଲେ ତ ନଈବାଲି ସରେ । ବନ୍ଧ ଉପରେ ମୁଠାଏ ମୁଠାଏ ମାଟି ପଡ଼ୁଥିଲେ ସିନା ବନ୍ଧ ଉଚ୍ଚ ହେବ, ନ ହେଲେ ତ ଧୋଇ ଯାଇ ଯାଇ ବନ୍ଧ ଜମି ସମାନ ହୋଇଯିବ ।

ଏବ କାଳ ଦେଖୁ ନାହିଁ, କ୍ରମେ ଶସ୍ୟହାନି ହେଉଅଛୁ, ଜିନିଷପତ୍ର ଦାମ କେତେ ବଢ଼ିଲାଣି, ଖର୍ଚ୍ଚ ଠଙ୍କାକ ଜାଗାରେ ଦୁଇ ଠଙ୍କା ନ ହେଲେ ଚଳୁ ନାହିଁ; ଏପରି ସମୟରେ ଉପରୁ ଅନ୍ୟ ବ୍ୟବସାୟ କରି ଗୃହ ପରିବାର ଫିକର 'ନ କରି କେବଳ ବାପ ସମ୍ପତ୍ତିକି ଗୃହିଁ ରହିଲେ ଲୋକ ଚଳି ପାରିବ ? ନ ଚଳି ପାରିଲେ ଅଳ୍ପେ ଅଳ୍ପେ ବନ୍ଧା ଦେବ, ବିକିବ, କରଜ କରିବ, ସେତିକ ଶେଷ ହେଲେ ତା ଦ୍ୱାରେ ଯା ଦ୍ୱାରେ ଗୋଡ଼ ଭାଙ୍ଗି ଟିଏ ହୋଇ ପରିବାର ଅଧଲାଏ ପାଇଁ ହାତ ବଢ଼ାଇବ ! କାହା ପୁଅ, କାହା ନାତି, ଶେଷରେ ଏହିପରି ଅପମାନିତ ହେବ । ଘରକୁ ଆସିଲା ବେଳକୁ ମାଇପ, ପିଲାଏ କହୁଥିବେ, ଅଳା ତ କିଛି ଆଣିଲ ନାହିଁ, ଖାଇବୁଁ କଣ ? ଦାଣ୍ଡକୁ ଗଲେ ଯାହାକୁ ମାଗିବ, ସେ ଧୂରି ଧୂରି ମାର ମାର କରିବ; ଏପରି ଜଞ୍ଜାଳରେ ପଡ଼ି ହଟହଟା ହେବାଟା କଣ ଭାରି ସୁଖର କଥା ? ଯୋଗ୍ୟ ହୋଇ ଆପଣା ବାହୁବଳଦ୍ୱାରା ଯାହାର ଗୃହ ପରିବା ଅର୍ଜିବାର କ୍ଷମତା ନାହିଁ, ହଜାରେ ବାପ ସମ୍ପତ୍ତି ଥିଲେ ସେ ଶେଷକୁ ମାଗି ଖାଏ । କଥା ଅଛି ପରା—

"ପୁଅ ଯେବେ ଯୋଗ୍ୟ ହୁଏ ଧନ କାହିଁ ପାଇଁ ସଞ୍ଚୁ !
ପୁଅ ଯେବେ ଅଯୋଗ୍ୟ ହୁଏ ଧନ କାହିଁ ପାଇଁ ସଞ୍ଚୁ !"

ସ୍ତ୍ରୀ—ହଁ, ତା ନୁହେ କଣ ? ଅଛା, ତମ ମନ ଯେବେ ମାନୁ ନାହିଁ, ବର୍ତ୍ତମାନ ବିବାହ କଥା ବନ୍ଦ ଥାଉ ! ତେବେ ଏଣୁ ପାହୀ ବୁଝିଥିଲେ କ୍ଷତି ନାହିଁ ?

ସ୍ୱାମୀ—ମୁଁ କଣ ବୁଝୁ ନାହିଁ—ସେପରି ଗୋଟିଏ ମିଳିଲେ ତ ହେବ, କାଲି କୁଜଙ୍ଗ ରଜା ଘରୁ ଭଲଲୋକ ଆସିଥିଲେ ।

ସ୍ତ୍ରୀ—ତାଙ୍କୁ କଣ ଜବାବ ଦେଲ ? ରଜାଘର, ଧନଦ୍ରବ୍ୟ ବେଶି ମିଳିପାରେ, କଲେ ଅପତ୍ତି କଣ ? ରଜାଘର ଝିଅ ସୁନ୍ଦରୀ ହୋଇଥିବ !

ସ୍ୱାମୀ—ଆଉ କିଛି କଥାରେ ବାଛିବାକୁ ନାହିଁ, ଧନ ଦ୍ରବ୍ୟ ବହୁତ ଦେବେ ବୋଲି କହୁଛନ୍ତି ସତ, କିନ୍ତୁ ମୋ ମନଟା ମାନୁ ନାହିଁ।

ସ୍ତ୍ରୀ—କାଣୀ ଗାଈର ଭିନେ ଗୋଠ ପରି ସବୁ କଥାରେ ତମର ଗୋଟାଏ ଭିନେ ବୃଦ୍ଧାମଣୀ ! କିଏ ରଜାଘରେ ବନ୍ଧୁ ଖୋଜିଲେ ପାଉ ନାହିଁ, ଲୋକେ ଟଙ୍କା ଦେଇ ଜାତି କିଣୁଛନ୍ତି, ପୁଣି ଦ୍ୱାରକୁ ରଜାଘର ମଣିଷ ବଳେ ଆସୁଛନ୍ତି, ଏ କହୁଛନ୍ତି କଣ ନା ମନ ମାନୁ ନାହିଁ—କାହିଁକି ? ଏଥିରେ ପୁଣି କି ପୁରାଣ ଅଛି ଟିକିଏ ଶୁଣେ ?

ସ୍ୱାମୀ—ଅଗୋ, ତୁମେ ଦେଖୁନାହିଁ, ଆମେ ସାଧାରଣ ଲୋକ ଦୁଃଖେ ସୁଖେ ଚଳୁଥାଉଁ, ଆମ ଘରେ ପ୍ରଥାର ନାହିଁ, ତମେ ମୁଠାଏ ରାନ୍ଧିଦେଲ, ଚାକର ନାହିଁ ତ ଘର ପାଇଟି କରି ପକାଇଲ; କିନ୍ତୁ ରଜାଘର ଝିଅମାନେ ତ ସେ କାମ ସବୁ କରିବେ ନାହିଁ, ଓଲଟି ତମରି ଉପରେ ହୁକୁମ ଚଳାଇବେ । ସେ ଝିଅ ପୁଣି ଶୁଣୁଛି, ପାଠୋଇ ଝିଅ, ତଳକୁ ତଳକୁ ଚାହାନ୍ତି ନାହିଁ, ଯୋଇଲା ପରିବାରଙ୍କ ଦ୍ୱାରା ଚଳପ୍ରଚଳ ହୁଅନ୍ତି; ବଡ଼ଲୋକ କାରଖାନା; ସେ କଥା ଆମକୁ ପାଏ ନାହିଁ !

ସ୍ତ୍ରୀ—ହୁକୁମ କଣ ଚଳାଇବ ମ ? ଘରକୁ ତ ବୋହୂ ହୋଇ ଆସିବ, ଆମ କଥାରେ ଚାଲିବ ନାହିଁ, ଆଉ କଣ କରିବ ? ବାପ ଘରକୁ ତ ଫେରିଯିବ ନାହିଁ ?

ସ୍ୱାମୀ—ଫେରିଯିବ ନାହିଁ ସତ; ଫେରିଗଲେ ତ ଅଧୁର ରକ୍ଷା ପାନ୍ତି; ମାତ୍ର ଘରେ ରହି ଗୋଟିଏ ବ୍ୟାଧି ହେବ ।

ସ୍ତ୍ରୀ—ଲୋକେ ପୁଣି ବଡ଼ଘରୁ ବୋହୂ ଅଣୁଛନ୍ତି କାହିଁକି ?

ସ୍ୱାମୀ—ଆହେ, ବନ୍ଧୁ ବାନ୍ଧବ ସମାନସ୍କନ୍ଧରେ ବୋଲି ବଡ଼ ପୁରୁଷମାନେ କହିଛନ୍ତି—ଯାହା ଅଚ୍ଛାନ୍ତି ଯାହା ସାଜିବ ତାହା କଲେ କିନା ହେବ ? ମୂଲିଆ ଦୁଆରେ ହାତୀଟାଏ ମଂଗଣା ବାନ୍ଧିଦେଲେ ବି ତାକୁ ସେ ପୋଷିପାରେ ନାହିଁ । ମୁଁ ଏହା ଭାବି ଚିନ୍ତି ତାକୁ ଜବାବ ଦେଲି ନାହିଁ, ଟାଳିଦେଲି— ଆଚ୍ଛା, ପରେ ବୁଝିବା ବୋଲି କହିଲି ।

ସ୍ତ୍ରୀ—ତେବେ ସେଦିନ କପରି କହୁଥିଲ ଝିଅକୁ ଗୋଟିଏ ବଡ଼ଲୋକ ଘର ଦେଖି ବିବାହ ଦେବ ?

ସ୍ୱାମୀ—ଝିଅ ବାହା, ପୁଅ ବାହା ଏକାନୁହେଁ । ଝିଅଟି ଆମ ଘରୁ ଯିବ, ବୋହୂଟି ଆମ ଘରକୁ ଆସିବ । ଆମେ ବୋହୂକୁ ନେଇ ଘର କରିବା । ଝିଅ ବଡ଼ଲୋକ ଘରକୁ ଗଲେ ତାଙ୍କ ସୁଖରେ ସୁଖୀ ହେବ; ମାତ୍ର ବୋହୂ ସୁଖରୁ ଆସି ଦୁଃଖରେ ପଡ଼ିବ । ଦୁହିଁଙ୍କ ମନର ଅବସ୍ଥା ସମାନ ହେବ କି ? ଗୋଟିଏ ସୁଖରେ ରହି ବାପଘର ଭୁଲିଯିବ, ଅନ୍ୟଟି ଦୁଃଖରେ ପଡ଼ି ବାପଘରକୁ ଝୁରିହେବ । ଗୋଟିଏ ବାପକୁ ପ୍ରଶଂସା କରିବ, ଅନ୍ୟଟି ନିନ୍ଦା କରିବ । କଥାଟା ସତ ନୁହେଁ କି ?

ସ୍ତ୍ରୀ—ସତ, ମାତ୍ର ସାବିତ୍ରୀ ତ ରଜାଘର ଝିଅ, ସେ ସତ୍ୟବାନଙ୍କୁ ବିବାହ କରି ତାଙ୍କ ଘରେ ଚଳିଲେ କିପରି ?

ସ୍ୱାମୀ—ସଂସାରର ସବୁ ସ୍ତ୍ରୀମାନେ ଯେବେ ସତୀ ସାବିତ୍ରୀଙ୍କ ପରି ହୁଅନ୍ତେ, ତେବେ ଆଉ ଚିନ୍ତା କଣ ? ସାବିତ୍ରୀ "ଯେ ଦେଶେ ଯାଇ ସେ ଫଳ ଖାଇ" ନୀତି ଅବଲମ୍ବନ କଲେ; କିନ୍ତୁ ସମସ୍ତେ କଣ ସେପରି କରନ୍ତି ?

ସ୍ତ୍ରୀ—ସେପରି ଶିକ୍ଷା ଦେଲେ ତ ହୁଅନ୍ତା ? ଝିଅମାନଙ୍କୁ ମୂଳରୁ ସେପରି ଗଢ଼ିଲେ ଯିନା ସେମାନେ ଶିଖନ୍ତେ ।

ସ୍ୱାମୀ—ଝିଅମାନଙ୍କର କଣ କେବଳ ଦୋଷ ବୋଲି ମୁଁ କହୁଛି ? ଏଥିରେ ମାଆମାନଙ୍କର ଦୋଷ ଏବଂ ବାପମାନଙ୍କର ମଧ୍ୟ ଦୋଷ ।

ସ୍ତ୍ରୀ—ଅମ ଝିଅ ତ କେତେ ଦିନ ଇସ୍କୁଲରେ ପଢ଼ିଲାଣି, ତାର କିଛି ଅକଲ ହେବାର ଦେଖୁନାହିଁ ?

ସ୍ୱାମୀ—ଅହେ, ଇସ୍କୁଲ ପାଠରେ ଚରିତ୍ର ଗଠିତ ହେବା ଭଳିଆ ବେଶି ମାଲ ମସଲା ଥିଲା ପରି ବୋଧ ହୁଏ ନାହିଁ । ପୁରାତନ ଧର୍ମ ସମ୍ବନ୍ଧୀୟ କଥାମାନଙ୍କୁ ନୂତନ ଭାବ ଓ ଭାଷା ସହିତ ମିଳାଇ ଶିକ୍ଷା ଦେଲେ ଚରିତ୍ର ଗଠନରେ ବିଶେଷ ସାହାଯ୍ୟ କରନ୍ତା । ମାତ୍ର ଆଜିକାଲି ଇସ୍କୁଲରେ ସେପରି ଧରଣର ପଢ଼ା ହୁଏ ନାହିଁ । ଯଦି ମାଆମାନେ ଏ ବିଷୟରେ ଚେଷ୍ଟା କରନ୍ତେ, ବିଶେଷ ଫଳ ହୁଅନ୍ତା ।

ସ୍ତ୍ରୀ—ତମେ କେବଳ ମାଆମାନଙ୍କ ଦୋଷ ଖୋଜି ବୁଲୁଥାଅ ।

ସ୍ୱାମୀ—ମୁଁ ତ ଏତ କଥା କହିଲି, ଦୋଷ ଖୋଜିଲି କଣ ମ ? ମା ଝିଅର ଚରିତ୍ର ଗଠନ ଲାଗି ପୂର୍ଣ୍ଣ ମାତ୍ରାରେ ଦାୟୀ ।

ସ୍ତ୍ରୀ—ମା ଯିନା ଝିଅର ଚରିତ୍ର ଗଠନ କରିବ, ଆଉ ବୋହୂକୁ କିଏ କରିବ ?

ସ୍ୱାମୀ—ବୋହୂ ତ ପୁଣି ଝିଅ ଥିଲା । ମାଆଠାରୁ ଯାହା ଶିଖିବାର ଶିଖିଥିବ, ଶାଶୁଘରକୁ ଆସିଲେ ଶାଶୁ ଶିକ୍ଷା ଦେବ ।

ସ୍ତ୍ରୀ—ଶାଶୁ କଥା ମାନିଲେ ଯିନା ଶିକ୍ଷା ଦେବ, ନ ହେଲେ କଣ କରିବ ? ଏ କାଳ ବୋହୂ ଶାଶୁମାନଙ୍କୁ ଯାହା ମାନୁଛନ୍ତି ।

ସ୍ୱାମୀ—ଖାଲି ବୋହୂମାନଙ୍କର ଦୋଷ ଅଛି, ଆଉ ଶାଶୁମାନଙ୍କର କିଛି ଦୋଷ ନାହିଁ ? ମା ଝିଅକୁ ଯେଉଁ ଦୃଷ୍ଟିରେ ଦେଖେ,ଶାଶୁ ବୋହୂମାନଙ୍କୁ ସେହି ଦୃଷ୍ଟିରେ ଦେଖିଲେ ଭଲ ହୁଅନ୍ତା ଏବଂ କିଛି ଅଡୁଆ ହୁଅନ୍ତା ନାହିଁ । ଶାଶୁମାନେ ତ ସେପରି କରନ୍ତି ନାହିଁ, ସବୁବେଳେ ସେହି ପୁରୁଣା କାଳିଆ ଅଚଳି । ପାହାର ଦେଇ ବୋହୂମାନଙ୍କୁ ଶାସନ କରିବାକୁ ଚେଷ୍ଟା କରନ୍ତି । ବୋହୂ ତ ମଣିଷ, ତାର ମନ କଣ ହେବ ? ଭୟ ଦେଖାଇ ଶାସନ କଲେ କେତେ କାଳ ଚଳିବ ? ସ୍ନେହଦ୍ୱାରା ବୋହୂ ମନ କିଣି ନେଇ ପାରିଲେ ବୋହୂ କୁକୁର ପରି ଶାଶୁ ପଛେ ପଛେ ଗୋଡ଼ାଇଥିବ । କେତେବେଳେ ସ୍ନେହଦ୍ୱାରା ଶୀଭୂତ କରିବ, କେତେବେଳେ ଭୟ ଦେଖାଇ ଶାସନ କରିବ, କିନ୍ତୁ ସ୍ନେହଦ୍ୱାରା ଅନ୍ୟର ମନ କିଣିପାରିଲେ ତାହା ଚିରସ୍ଥାୟୀ ହୁଏ ।

ସ୍ତ୍ରୀ—ଭୟ ଦେଖାଇ ଶାସନ କଲେ କଣ ହୁଏ ?

ସ୍ୱାମୀ—ଅବଶ୍ୟ ଶାଶୁକୁ ବୋହୂ ମୁହଁରେ କିଛି କହିପାରେ ନାହିଁ, ମାତ୍ର ମନେ ମନେ ଫୋଳଉଣା ରାଗ । ନୂଆ ନୂଆ ଦିନାକେତେ ପାଟି ଫିଟାଏ ନାହିଁ ସତ, କିନ୍ତୁ ଟିକିଏ ପୁରୁଣା ହେଲେ ପାଟିକି ପାଟି ଲଗାଇ ଜବାବ ଦିଏ, କଳି କରେ, ତୁ ଜଣକୁ ମୁଁ ଜଣେ କହିବସେ । ଆଉ ଶାଶୁର ମହତ ରହିଲା କେଉଁଠି ? ଯେଉଁଠି ଶାଶୁ ବୋହୂର ଗୁଣ ଗ୍ରାମ କହିବୁଲେ, ବୋହୂ ମଧ୍ୟ ଶାଶୁର ଗୁଣଗ୍ରାମ କହିବୁଲେ । ପରସ୍ପର ପ୍ରତି ପରସ୍ପରର ଘୃଣା ଈର୍ଷା ଜାତ ହୁଏ ଏବଂ ପୁଅ ବିଚରା ମାଆକୁ କଣ କହିବ ବା ସ୍ତ୍ରୀକୁ କଣ କହିବ, ମଧ୍ୟରେ ନିଜ ଅବସ୍ଥା ପ୍ରତ୍ର ହୁଏ । ମା ପକ୍ଷ ନେଲେ ସ୍ତ୍ରୀ ବିରକ୍ତ, ସ୍ତ୍ରୀ ପକ୍ଷ ନେଲେ ମା ବିରକ୍ତ—କରିବ କଣ ? ଏହିପରି ଗୃହଟି ଅଶାନ୍ତିଭବନ ହୋଇ ଉଠେ ।

ଆଉ ଗୋଟିଏ କଥା ମନେ ରଖ —'ମାଲେ, ଝିଅଲେ' କହି ଯେତେ କାମ କରାଇ ନଅଯାଇ ପାରେ, ସବୁବେଳେ ଧାକମି ଚଲାଇଲେ ତେତେ କାମ ହୁଏ ନାହିଁ; ସୁତରାଂ ଶାଶୁମାନେ ବୋହୂମାନଙ୍କୁ ଝିଅପରି ପାଳନ କରିବେ ଏବଂ ବୋହୂମାନଙ୍କ ସହିତ ମା ତୁଲ୍ୟ ବ୍ୟବହାର କରିବେ । ଭଲ ବ୍ୟବହାର କଲେ ଲୋକ ବଣଜନ୍ତୁଙ୍କୁ ଅଧୀନ କରିପାରେ, ମନୁଷ୍ୟ ଅପଣାର ହେବ ନାହିଁ ?

ସ୍ତ୍ରୀ—କହିବ ତ ଅଉ କଣ କରିବ ? ନ ମାନିଲେ କଣ କରିବ ?

ସ୍ୱାମୀ—ଦେଖ ଝିଅ ହେଉ ବା ବୋହୂ ହେଉ, ସେମାନଙ୍କୁ ଶିକ୍ଷା ଦେଇ ବାଟକୁ ଅଣିବା ବଡ଼ କଠିନ ବ୍ୟାପାର, ଶିକ୍ଷା ଦେବା ଅଗରୁ ଯାହାକୁ ଶିକ୍ଷା ଦେବ, ତାର ନାଡ଼ି ଠିକଣା କରିବା ଅବଶ୍ୟକ, ଅର୍ଥାତ୍ ସ୍ୱଭାବ ପ୍ରକୃତିକି ଜଣି ଠିକଣା କରିବା ଅବଶ୍ୟକ । ପ୍ରଥମେ ଏ ଗୁଡ଼ିକ ଠିକଣା କଲେ କେଉଁ ଦଗରେ ଶିକ୍ଷା ଦେବାକୁ ହେବ, ତାହା ସ୍ଥିର କରିବାକୁ ହେବ । ପ୍ରକୃତି ବିରୁଦ୍ଧରେ ହଠାତ୍ ବାଧା ଦେଲେ ତାହା ଅଗ୍ରାହ୍ୟ ହେବ, ସୁତରାଂ କ୍ରମେ ସେ ପ୍ରକୃତିକି ଫେରାଇ ଭଲ ଦିଗକୁ ଆଣିବାର ଚେଷ୍ଟା କରିବାକୁ ହେବ । ଦେଖ ଗୋଟିଏ ପିଲା ଭାରି ଜିଦ୍‌ଖୋର, ସେ ତା କଥା ବଜାଏ ରଖିବାକୁ ଚେଷ୍ଟା କରେ । ଅଚ୍ଛା କହିଲ, କିପରି ତାଉ ଜିଦ୍ ଭାଙ୍ଗିବାକୁ ହେବ ?

ସ୍ତ୍ରୀ—ଖୁବ୍ ମାଡ଼ ଦେବ ।

ସ୍ୱାମୀ—ଏ କଥା ଠିକ୍ ନୁହେଁ । ମାଡ଼ଦ୍ୱାରା କିଛି ଫଳ ହେବ ନାହିଁ । ପିଲାଟାର ଜିଦ୍ ଭାଙ୍ଗିବାକୁ ହେଲେ ମୋଟେ ତା କଥ ପ୍ରତି କାନ ଦେବ ନାହିଁ । ଏପରି ଦୁ' ଥର ଗୁର ଥର ହେଲେ ପିଲା ବୁଝି ପରିବ ଯେ, ତା କଥା କେହି ଶୁଣୁନାହାନ୍ତି; ସୁତରାଂ ସେ

ଖୋଲି ରଖିବ । ଏହାପରେ ପ୍ରତ୍ୟେକ ସ୍ୱତନ୍ତ୍ର ଭଣ୍ଡି କାର୍ଯ୍ୟ କରିବାକୁ ହେବ ।

ସ୍ତ୍ରୀ—ଏଥିରେ ତ ତେବେ ବହୁତ କଳା କୌଶଳ ଆବଶ୍ୟକ ? ଆମେ ମାଇପେ ଏତେ କଥା ବୁଝିବୁ କିପରି ?

ସ୍ୱାମୀ—ପଢ଼ୁଥିଲ, ଟିକିଏ ମଣିଷ କରିବା ଲଣ ପାଖରେ ପଡ଼ିଛି ? ଆଛା, ଏତିକି ଥାଉ !

---

## ଦ୍ୱାଦଶ ପରିଚ୍ଛେଦ

—ଏ କି ପୋଥି ପଢୁଛ ?

ମୀ—କର୍ଣ୍ଣଚରିତ ।

—କଣ କର୍ଣ୍ଣଚରିତ ଟିକିଏ କହିଲ ?

ମୀ—ଶୁଣ କହୁଛି ! କର୍ଣ୍ଣ ଜଣେ ବଡ଼ ରଜା ଥିଲେ । ସେ କୁନ୍ତୀଙ୍କ ପୁତ୍ର ଓ ଅଙ୍ଗ ଦେଶର ରାଜା ଥିଲେ ! କର୍ଣ୍ଣ ଭାରି ଦାନୀ ଥିଲେ । ଯେ ଯାହା ମାଗେ ସେ ତାଙ୍କୁ ତାହା ଦେବାକୁ କୁଣ୍ଠିତ ହୁଅନ୍ତି ନାହିଁ । କର୍ଣ୍ଣଙ୍କର ଅତୁଳ ସମ୍ପତ୍ତି, କେଉଁ କଥାରେ ଊଣା ! କର୍ଣ୍ଣ ସମାନରେ ଦାନୀ ପୃଥିବୀରେ ଅତି କମ୍ ଲୋକ ଥିଲେ । ଶୁଣି ନାହିଁ, ଚକ୍ରୀଆ ପଣ୍ଡା ମାନେ କହନ୍ତି "କର୍ଣ୍ଣ ସମ କେ ଦାନୀ ହେବ !" କେଉଁ ଯୁଗରେ କେଉଁ କାଳରେ କର୍ଣ୍ଣ ଥିଲେ, କିନ୍ତୁ ଅଦ୍ୟାପି ତାଙ୍କ ନାମ ପଡ଼ୁଛି ! ଏଥିଲାଗି କହନ୍ତି—ଯଶ କୀର୍ତ୍ତି କେବଳ ରହେ, ଆଉ କିଛି ରହେ ନାହିଁ ! ଆମ ହିନ୍ଦୁ ଧର୍ମରେ ଦାନଠାରୁ ବଳି ଧର୍ମ ନାହିଁ । କର୍ଣ୍ଣରାଜା ଦାନୀ ବୋଲି ପୃଥିବୀରେ ବଡ଼ ବିଖ୍ୟାତ ହେଲେ । ଚତୁର୍ଦ୍ଦିଗରେ ଏହି କଥା ପ୍ରତିଧ୍ୱନିତ ହେଲା । ମାତ୍ର ଧନେ

ଭଗବାନ ସ୍ୱୟଂ ପରୀକ୍ଷା କରିବା ଉଦ୍ଦେଶ୍ୟରେ କର୍ଣ୍ଣଙ୍କ ଦ୍ୱାରରେ ବୃଦ୍ଧ ବ୍ରାହ୍ମଣ ବେଶରେ ଉପସ୍ଥିତ ହେଲେ ।

ସ୍ତ୍ରୀ—ଭଗବାନ କାହିଁକି ଆସିଲେ ? ସେ ତ ଦାନ କରୁଥିଲେ, ଏ କାହିଁକି ପରୀକ୍ଷା କଲେ ?

ସ୍ୱାମୀ—ତମେ ଜାଣ, ଭଗବାନଙ୍କର ଗର୍ବଗଞ୍ଜନ ବାନା ଅଛି । ସେ କାହାରି ଦମ୍ଭ ଅହଙ୍କାର ସହି ପାରନ୍ତି ନାହିଁ । ଭଗବାନ ଦେଖିଲେ, କର୍ଣ୍ଣ ତ ଦାନୀ ବୋଲି ସଂସାରରେ ପରିଚିତ ଅଛି ଦେଖିବା ଦେଖି କର୍ଣ୍ଣର ମନ କେଡ଼େ ଝାଣ—ଲୋକ ଦେଖିବାକୁ କର୍ଣ୍ଣ ଦାନ କରୁଛି ନା ପ୍ରକୃତ ଧର୍ମରକ୍ଷା କରିବାକୁ ଦାନ କରୁଛି ।

ସ୍ତ୍ରୀ—ଭଗବାନ କଣ କଲେ ?

ସ୍ୱାମୀ—ସେ ବ୍ରାହ୍ମଣ ବେଶରେ ଆସି କର୍ଣ୍ଣଙ୍କୁ ପଚାରିଲେ, " ତୁମେ ତିନିବାର ସତ୍ୟ କର, ମୁଁ ଯାହା ମାଗିବି ଦେବ ।" କର୍ଣ୍ଣ ତିନିବାର ସତ୍ୟ କଲେ । ବ୍ରାହ୍ମଣ କହିଲେ, " ଦେଖ, ମୁଁ ବଡ଼ କ୍ଷୁଧାର୍ତ୍ତ; ତୁମ ପୁଅ ମୁଣ୍ଡ ସ୍ୱହସ୍ତରେ କାଟି ତୁମ ସ୍ତ୍ରୀ ହସ୍ତରେ ରନ୍ଧନ କରାଇ ମତେ ଭୋଜନ କରାଅ ।"

ସ୍ତ୍ରୀ—ଓଃ,ମୋ ମା ଲୋ, କଣ କହିଲେ ମ ? ଭଗବାନ ହୋଇ ସେ ଏତେ ବଡ଼ କଥା କହିଲେ କିପରି ? ଆପଣା ପୁଅ ମୁଣ୍ଡ ଆପେ କାଟିବ, ପୁଣି ମା ତାକୁ ରାନ୍ଧିବ ? ସେ କଣ ଭଗବାନ ନା ରାକ୍ଷସ ?

ସ୍ୱାମୀ—ଦେଖ, କିପରି କଠୋର ପରୀକ୍ଷା ! ସେ ତ ଭଗବାନ ଅନ୍ତର୍ଯାମୀ ପୁରୁଷ, ସେ ତ ମୃତ ଲୋକକୁ ପୁନର୍ଜୀବିତ କରି ଦେଇ ପାରନ୍ତି; ମାତ୍ର କର୍ଣ୍ଣ କଣ କରିବ .ଦେଖିବା ଦେଖି ? ଟଙ୍କା ପଇସା ଜମିବାଡ଼ି ଧନରତ୍ନ ଇତ୍ୟାଦି ଦାନ କରି ଦେବା

ତା ବଡ଼ ସହଜ କଥା, ଲୋକ ଅକ୍ଲେଶରେ ଏ ସବୁ ଦାନ କରି ପାରେ । ପୁଅଠାରୁ ବଳି ମନୁଷ୍ୟର ଆଉ ଅଧିକ ପ୍ରିୟ କଣ ଅଛି ? ମା ବାପ ପୁଅ ବଦଳରେ ସବୁ ଦେଇ ପାରନ୍ତି; ମାତ୍ର ପୁଅର ମୁଣ୍ଡ କାଟି ରନ୍ଧନ କରିବାକୁ କିଏ ରାଜି ହେବ ? ଏହି ଉଦ୍ଦେଶ୍ୟରେ ଭଗବାନ ବାଛି ବାଛି ଏହି କଥା ମାଗିଲେ ।

ସ୍ତ୍ରୀ—କର୍ଣ୍ଣ ଏ କଥା ଶୁଣି କଣ କଲେ ?

ସ୍ୱାମୀ—କର୍ଣ୍ଣ ପ୍ରଥମେ ଶୁଣୁ ଶୁଣୁ ମସ୍ତକରେ ବଜ୍ରପାତ ହେଲା ପରି ମନେ କଲେ, କନ୍ଦନ କଲେ । ଭଗବାନ କହିଲେ, "ତେବେ ମୁଁ ଯାଉଛି, ତୁ ଦେଇ ପାରିବୁ ନାହିଁ ।" କର୍ଣ୍ଣ କହିଲେ, "ନା, ଆପଣଙ୍କୁ ଯିବାକୁ ହେବ ନାହିଁ; ମୁଁ ଯେତେବେଳେ ସତ୍ୟ କରିଛି, ଅବଶ୍ୟ ପୁଅର ମୁଣ୍ଡ କାଟି ଦେବି ।" ପୁଅ ନାମ ବୃଷକେତନ । ପୁଅ ଚଟ୍ଟଶାଳିରେ ଥିଲା, ତତ୍‌କ୍ଷଣାତ୍ ଆସି ପ୍ରବେଶ କଲା । ଦେଖେ, ପିତାଙ୍କ ଚକ୍ଷୁରେ ଲୋତକଧାର ! କାରଣ ଅନୁସନ୍ଧାନ କରି ବୁଝିଲା, କଥାଟା କଣ । ପିତାଙ୍କୁ କହିଲା, "ଆପଣ କାନ୍ଦୁଛନ୍ତି କାହିଁକି ? ଏ ଶରୀର ଆପଣଙ୍କର, ଆପଣ ମତେ ଜନ୍ମ ଦେଇଛନ୍ତି; ମୋର ଅବଶ୍ୟ ଦିନେ ମରଣ ହେବ । ଆପଣ କାଲି ଆଉ ପୁତ୍ର ଲାଭ କରି ପାରନ୍ତି, କିନ୍ତୁ ସତ୍ୟ ଭଙ୍ଗ ହେଲେ ଧର୍ମହାନି ହେବ । ଆପଣ ସତ୍ୟ ରକ୍ଷା କରି ପାରିବେ ନାହିଁ—ପାପଭାଗୀ ହେବେ ? ଆପଣ ଶୀଘ୍ର ମୋ ମୁଣ୍ଡ କାଟନ୍ତୁ !"

ସ୍ତ୍ରୀ—ବୃଷକେତନ ମା କଣ କହିଲେ ?

ସ୍ୱାମୀ—ମା କହିଲେ, "ତମେ ମୋର ପତି, ମୁଁ ତମର ପତିବ୍ରତା ସ୍ତ୍ରୀ, ତମର ଧର୍ମ ରକ୍ଷା କରିବା ମୋର କର୍ତ୍ତବ୍ୟ । ମୁଁ ବାଧା ଦେଲେ ପାପଭାଗିନୀ ହେବି । ପୁଅ ତମର ! ପୁଅ ମୁଣ୍ଡ କାଟିଲେ

ତମର ଯଦି ଧର୍ମରକ୍ଷା ହୁଏ, ତେବେ ତମେ କାଟ, ମୁଁ କପର ବାଧା ଦେବି ?"

ସ୍ତ୍ରୀ—ମୋ ଦେହ ଶୀତଳଉଛି ! ଓଃ, କର୍ତ୍ତାଙ୍କ ଗୁଣକୁ ଧନ୍ୟ ! ମୁଁ ହୋଇଥିଲେ ଯେଉଁଠି ମୋ ପ୍ରାଣ ବାହାର ଯାଇଥାନ୍ତା ! ଅଚ୍ଛା, ପୁଣି କଣ ହେଲା କହିଲ—ସତେ କଣ ପୁଅ ମୁଣ୍ଡ କଟା ହେଲା ?

ସ୍ୱାମୀ—ହଁ, ପୁଅ ମୁଣ୍ଡ କଟା ହେଲା । ମା ସ୍ୱହସ୍ତରେ ମାଂସ ରନ୍ଧନ କଲେ । ମାଆଙ୍କର ପୁଣି ଟିକିଏ ଲୋଭ ଥିଲା, ମୁଣ୍ଡଟିକୁ ଲୁଗୁଛ ରଖି କେବଳ ମାଂସଯାକ ରନ୍ଧନ କଲେ । ବ୍ରାହ୍ମଣ ଜାଣିପାର ପୁଣି କହିଲେ । ତହୁଁ ସେ ବାଧ ହୋଇ ମୁଣ୍ଡ ରାନ୍ଧିଲେ । ପତ୍ର ପଡ଼ିଲା, ବ୍ୟଞ୍ଜନ ବଢ଼ାହେଲା; କିନ୍ତୁ ବ୍ରାହ୍ମଣ କହିଲେ, 'ତୁମ୍ଭେ ସ୍ତ୍ରୀ ପୁରୁଷ ନ ଖାଇଲେ ମୁଁ ଖାଇବି କପର ? ତୁମ୍ଭେମାନେ କାଲେ ଏଥିରେ ବିଷ ଦେଇଥିବ !' ଶେଷକୁ ବାଧହୋଇ ଦୁଇ ପ୍ରାଣୀ ଖାଇ ବସିଲେ । ବ୍ରାହ୍ମଣ କହିଲେ, "ବୃଷିକେଶନକୁ ଡାକ !" ଏ କଥା ଶୁଣି ଦୁଇ ପ୍ରାଣୀ ଅବାକ୍ ! ମନେକଲେ—ପୁଅ ତ ହଣାହେଲା, ଆଉ ଆସିବ କେଉଁଠୁ ? ବ୍ରାହ୍ମଣ କହିଲେ, "ତୁମ୍ଭେ ଦୁଇ ପ୍ରାଣୀ ଯାଇ ବାହରଆଡ଼େ ଡାକ ।" ଦୁଇ ପ୍ରାଣୀ ବାହରଆଡ଼କୁ ଯାଇ ଡାକିଲେ । ଏଣେ ବ୍ରାହ୍ମଣ ଅନ୍ତର୍ଦ୍ଧାନ ହେଲେ ! ବୃଷିକେଶନ ଡାକ ଶୁଣି ଆସି ଉପସ୍ଥିତ ! ଦୁଇ ପ୍ରାଣୀ ଫେରି ଆସି ଦେଖନ୍ତି ଯେ ବ୍ରାହ୍ମଣ ନାହାନ୍ତି । କର୍ତ୍ତା ବୁଝି ପାରିଲେ, ଏ ବ୍ରାହ୍ମଣ ନୁହେ—ଭଗବାନ ସ୍ୱୟଂ ଛଦ୍ମ ବେଶରେ ଆସି ତାଙ୍କୁ ପରୀକ୍ଷା କରୁଥିଲେ । ମନରେ ବଡ଼ ଆନନ୍ଦିତ ହେଲେ । ସେ ଦିନ କର୍ତ୍ତାଙ୍କ ଦାନପଣିଆ ସହସ୍ର ଗୁଣରେ ପ୍ରଚୁରିତ ହେଲା ।

ସ୍ତ୍ରୀ—ପୁଅ ତ ହଣା ହୋଇଥିଲା, ପୁଣି ଆସିଲା କେଉଁଠୁ ?

ସ୍ୱାମୀ—ଅହେ, ସେ ସବୁ ଭଗବାନଙ୍କ କୂଟ । କର୍ଣ୍ଣ ଯେତେବେଳେ ପୁଅକୁ ହାଣିବାକୁ ଗଲେ, ସେତେବେଳେ ଭଗବାନ ମାୟା କରି ଅସଲ ପୁଅକୁ ନେଇ ଗଲେ—ସେଠିଂ ମାୟା ପୁଅ ତିଆ କରିଦେଲେ; କର୍ଣ୍ଣ ସେ କଥାକୁ ବୁଝିବେ କପରି ? କର୍ଣ୍ଣ ବୁଝୁଛନ୍ତି ଯେ, ସେ ତାଙ୍କ ପୁଅକୁ ହାଣୁଛନ୍ତି । ଭଗବାନଙ୍କ ମାୟା ବୁଝିବା ମନୁଷ୍ୟ ପକ୍ଷରେ ଅସାଧ୍ୟ । ଭଗବାନ ତ ଗ୍ରୀ ଭେଟରେ କର୍ଣ୍ଣଙ୍କ ପୁଅକୁ ହଣାଇ ମାଂସ ଖାଇବାକୁ ଆସି ନ ଥିଲେ । ଭଗବାନ ବିଚାରିଲେ—ଆଚ୍ଛା, କର୍ଣ୍ଣ ଧର୍ମକୁ ବଡ଼ ମନେ କରିବ ନା ପୁଅକୁ ବଡ଼ ମନେ କରିବ, ଦେଖାଯାଉ । ଯେବେ ପୁଅପ୍ରତି ମମତା ଦେଖାଇବ ତେବେ ଜଣାଯିବ, କର୍ଣ୍ଣର ପ୍ରକୃତ ଧର୍ମ ଭାବ ନାହିଁ, କେବଳ ଲୋକଙ୍କୁ ଦେଖାଇବା ଲାଗି; ଯେବେ ଧର୍ମପ୍ରତି ଆସ୍ଥା ଥିବ, ତେବେ ପୁଅକୁ ତୁଚ୍ଛ ମନେ କରିବ । ଏହି କଥା ପରୀକ୍ଷା କରିବା ଲାଗି ଭଗବାନ ବ୍ରାହ୍ମଣ ବେଶରେ ଆସିଥିଲେ । ଆଚ୍ଛା, ତୁମେ କହିଲ, ଧର୍ମ ବଡ଼ ନା ପୁଅ ବଡ଼ ?

ସ୍ତ୍ରୀ—ଧର୍ମ ଅବଶ୍ୟ ବଡ଼, କିନ୍ତୁ ଆମେ ମାଇପେ କଣ ସେ କଥା ବୁଝୁଁ ? ପୁଅର ମାୟା ମମତା ଛାଡ଼ିବା କଣ ସହଜ ?

ସ୍ୱାମୀ—ସହଜ ନୁହେଁ ସତ । ଧର୍ମ ରକ୍ଷା କରିବା ତ ସହଜ କଥା ନୁହେଁ । ସ୍ତ୍ରୀ ପୁତ୍ର ଧନ ରତ୍ନ ଇତ୍ୟାଦି ସମସ୍ତ ତୁଚ୍ଛ ମନେ କରି ଯେ ଧର୍ମ ରକ୍ଷା କରେ ସେ ପ୍ରକୃତ ଧର୍ମୀ । ମନରେ ଲେଶମାତ୍ର କଳ୍ପନା ଥିଲେ ଧର୍ମ ପ୍ରତିପାଳିତ ହୁଏ ନାହିଁ । "କଲ୍ୟାଣ ମୂଳେ କାଳ ଥାଇ, ପ୍ରାଣୀ ତା ଜାଣି ନ ପାରଇ"—ଭଗବାନ ତ କହୁଛନ୍ତି । ଯାହା କରିବ ସ୍ୱଚ୍ଛ ମନରେ କରିବ, କଲ୍ୟାଣ

ତଲେ କାର୍ଯ୍ୟର କିଛି ଫଳ ନାହିଁ । ମୁଠିଏ ଗୁଡ଼ାଳ ଗୋଟାଏ ଦାଅ ପଦ୍ମ, ସ୍ବଚ୍ଛ ମନରେ ଦେଇଥିଲେ ସେଥିରେ ଯେତେ ଧର୍ମ, କଲୁଷ ମନରେ ହଜାରେ ଟଙ୍କା ଦେଲେ ତହିଁରେ ତାଣିକୁ ଏ ଧର୍ମ ନାହିଁ ।

ସ୍ତ୍ରୀ—ହଁ, ସେ କଥା ସତ ।

ସ୍ବାମୀ—ସତ ବୋଲି ଖାଲି ତୁଣ୍ଡରେ କହିଲେ ହେବ ନାହିଁ; କାର୍ଯ୍ୟରେ କରିବା ଆବଶ୍ୟକ; ଯାହା ବୁଝିବ ତଦନୁସାରେ କାର୍ଯ୍ୟ କରିବା ଉଚିତ । ଅଳ୍ପ ପେଟରେ କଥାଏ, ମୁହଁରେ କଥାଏ ଥିଲେ କିଛି ଫଳ ନାହିଁ । ଅଚ୍ଛା, ଆଜି ଏତିକି ।

---

## ତ୍ରୟୋଦଶ ପରିଚ୍ଛେଦ

ସ୍ତ୍ରୀ—ସେଟା କି ବହି ପଢ଼ୁଛ କି ?

ସ୍ବାମୀ—ଏ ବହିଟିର ନାମ "ବ୍ରତମାଳା ବିଧାନ" ।

ସ୍ତ୍ରୀ—କଣ, ବୁଝିପାରିଲି ନାହିଁ ।

ସ୍ବାମୀ—ଅହେ, ତୁମେମାନେ ଯେଉଁ ଓଷା ବ୍ରତ କର ନାହିଁ ତାର ବିଧି ବିଧାନ କଥା ଏଥିରେ ଅଛି ।

ସ୍ତ୍ରୀ—କି କି ବ୍ରତକଥା ଏଥିରେ ଅଛି କହିଲ ? ବ୍ରତ କଲେ କଣ ଫଳ ହୁଏ ବୋଲି ଏ ପୋଥିରେ ଲେଖିଛି ?

ସ୍ବାମୀ—ମୁଁ ପରା ଏଥର କଥା ଥରେ ତମକୁ ବୁଝାଇ ଦେଇଥିଲି ! ଯେଉଁ ବ୍ରତ କରିବ ସେହି ବ୍ରତର ଯାହା ଉଦ୍ଦେଶ୍ୟ, ତଦନୁସାରେ କାର୍ଯ୍ୟ କରିବ । ବ୍ରତ ଅର୍ଥ ତପସ୍ୟା, ସାଧନା, ପ୍ରତିଜ୍ଞା ଇତ୍ୟାଦି ।

ସ୍ତ୍ରୀ—ସେହି ସୁଦଶା ବ୍ରତ, ଲକ୍ଷ୍ମୀ ବ୍ରତ ଓ ସାବନୀ ବ୍ରତ କଥା ଏଥିରେ ଅଛି, ନା ଆଉ କଣ ଅଛି ?

ସ୍ୱାମୀ—ଏଥିରେ ଅନେକ ବ୍ରତ କଥା ଅଛି ।

ସ୍ତ୍ରୀ—କି କି ବ୍ରତ କଥା ଅଛି କହିଲ ?

ସ୍ୱାମୀ—୧ । ଅକ୍ଷୟତୃତୀୟାବ୍ରତ, ୨ । ଅଘୋର ଚତୁର୍ଦ୍ଦଶୀବ୍ରତ, ୩ । ଅନ୍ନସଂକ୍ରାନ୍ତିବ୍ରତ, ୪ । ଅନନ୍ତ ଚତୁର୍ଦ୍ଦଶୀବ୍ରତ, ୫ । ଅରଣ୍ୟଷଷ୍ଠୀ, ୬ । ଅଶୂନ୍ୟ ଶୟନ, ୭ । ଅଷ୍ଟ ମହାଦ୍ୱାଦଶୀ, ୮ । ଆମଳକୀ ଦ୍ୱାଦଶୀ, ୯ । ଆରୋଗ୍ୟ ସପ୍ତମୀ, ୧୦ । ଅଲୋଳ ଅମାବାସ୍ୟା, ୧୧ । ଉମା ମହେଶ୍ୱର, ୧୨ ଉମା ଚତୁର୍ଥୀ, ୧୩ । ଋଷିପଞ୍ଚମୀ, ୧୪ । କାର୍ତ୍ତିକେୟ, ୧୫ । କାତ୍ୟାୟିନୀ, ୧୬ । କାଳିକାବ୍ରତ, ୧୭ । କାମିତ୍ରୁକବ୍ରତ, ୧୮ । କୁକ୍କୁଟୀ ବ୍ରତ, ୧୯ । ଜନ୍ମାଷ୍ଟମୀ, ୨୦ । ଚମ୍ପକଚତୁର୍ଦ୍ଦଶୀ, ୨୧ । ଚାତୁର୍ମାସ୍ୟ, ୨୨ । ଜଳସଂକ୍ରାନ୍ତି, ୨୩ । ତାଳନବମୀ, ୨୪ । ତୁଳସୀ, ୨୫ । ଦାନଦ୍ୱାଦଶୀ, ୨୬ । ଦାନ ସଂକ୍ରାନ୍ତି, ୨୭ । ଦଧି ସଂକ୍ରାନ୍ତି, ୨୮ । ଦୁର୍ଗାବ୍ରତ, ୨୯ । ଦୁର୍ଗାଷ୍ଟମୀବ୍ରତ, ୩୦ । ଧର୍ମଘଟ ବ୍ରତ, ୩୧ । ନାଗପଞ୍ଚମୀ ୩୨ । ନିର୍ଜଳୈକାଦଶୀ, ୩୩ । ନୃସିଂହ ଚତୁର୍ଦ୍ଦଶୀ, ୩୪ । ପାଶୁପତବ୍ରତ, ୩୫ । ପିପିତକୀ ଦ୍ୱାଦଶୀ, ୩୬ । ପୁଣ୍ୟକବ୍ରତ, ୩୭ । ଫଳ ସଂକ୍ରାନ୍ତି ବ୍ରତ, ୩୮ । ବୁଧାଷ୍ଟମୀ, ୩୯ । ଭୂତଚତୁର୍ଦ୍ଦଶୀ, ୪୦ । ମଙ୍ଗଳଚଣ୍ଡୀ ବ୍ରତ, ୪୧ । ମଙ୍ଗଳବାର, ୪୨ । ମଙ୍ଗଳ ସଂକ୍ରାନ୍ତି, ୪୩ । ମଦନଦ୍ୱାଦଶୀବ୍ରତ, ୪୪ । ମଦନ ତ୍ରୟୋଦଶୀ, ୪୫ । ମନୋରଥ ଦ୍ୱିତୀୟା, ୪୬ । ମାନଚତୁର୍ଥୀ ବ୍ରତ, ୪୭ । ଯମପୁଷ୍କରିଣୀ, ୪୮ । ରମ୍ଭାତୃତୀୟା, ୪୯ । ରାଧାଷ୍ଟମୀ, ୫୦ । ରାମନବମୀ, ୫୧ । ରୁକ୍ମିଣୀବ୍ରତ, ୫୨ । ବକ ପଞ୍ଚକା, ୫୩ । ବାମନ ଦ୍ୱାଦଶୀ, ୫୪ । ବୀରାଷ୍ଟମୀବ୍ରତ, ୫୫ । ଶନୈଶ୍ଚରବ୍ରତ,

୫୬ । ଶିବରାତ୍ରି , ୫୭ । ଶବ ନାରାୟଣ, ୫୮ । ସନ୍ତାନଦ୍ୱାଦଶୀ ୫୯ । ଅନନ୍ତନାରାୟଣ ୬୦ । ସନ୍ତାନସ୍ତବ୍ରତ, ୬୧ । ସାବିତ୍ରୀବ୍ରତ, ୬୨ । ସିଦ୍ଧ ବିନାୟକ, ୬୩ । ସୀତା ନବମୀ, ଅଉ କେତେ ଅଛି, ମୁଁ କେତେ କହିବ ?

ସ୍ତ୍ରୀ—ହଇ ହୋ, ଏତେ ବ୍ରତ କେଉଁଠୁ ଅଇଲା ମ ? ମୁଁ ତ ଏମାନ୍ଙ୍କୁ ଅନେକ ବ୍ରତ ନାମ ଶୁଣି ନାହିଁ । କହ କହ, ଅଉ କି କି ବ୍ରତ ଅଛି ?

ସ୍ୱାମୀ—ଯେତକ କହି ଜାଣିଛ ଅଗ ସେତକଟି କର; ଖାଲି ନାଆ ଶୁଣିକରି କଣ କରିବ ? ଏ କାନେ ପଶି ସେ କାନେ ଯିବ ସିନା !

ସ୍ତ୍ରୀ—ଜାଣିବା ତ ଏତେ ପ୍ରକାର ବ୍ରତ ଅଛି; ଅଉ କଣ କଣ ଅଛି କହିଲ ?

ସ୍ୱାମୀ—୬୪ । ସୁବର୍ଣ୍ଣ, ୬୫ । ସ୍ୱରୂପଦ୍ୱାଦଶୀ, ୬୬ । ସୁନ୍ଦକାଷ୍ଠୀ ୬୭ । ସୋମବାର, ୬୮ । ହରିତାଳିକା, ୬୯ । ହରିମଙ୍ଗଳ,୭୦ । ଲକ୍ଷ୍ମୀବ୍ରତ, ୭୧ । ଅଦାର ଜିହ୍ୱାସନ, ୭୨ । ଗୁରୁଧନ ଓ ସଂକ୍ରାନ୍ତି ବ୍ରତ, ୭୩ । ଘୃତସଂକ୍ରାନ୍ତି, ୭୪ । ପୌର୍ଣ୍ଣମାସୀ ବ୍ରତ, ୭୫ । ବ୍ରାହ୍ମଣୋଦର ବ୍ରତ ।

ସ୍ତ୍ରୀ—ଏତିକି ? ଅଉ ନାହିଁ ?

ସ୍ୱାମୀ—ଅଉ ଥାଇପାରେ ଅନେକ, ବର୍ତ୍ତମାନ ଏତିକି ଜାଣିଥାଅ ।

ସ୍ତ୍ରୀ—ଖାଲି ନାମ ଶୁଣିରେ କଣ ହେବ ମ ? ବ୍ରତର ଉଦ୍ଦେଶ୍ୟ, କେଉଁ ବ୍ରତ କେବେ ହୁଏ କହିଦେଲେ ହେବ ନା ?

ସ୍ୱାମୀ—ସବୁ କହିଲେ ତ ଗୋଟାଏ ପୋଥି ହେବ, ମୁଁ ଏତେ କଥା କହିବି କପରି ? ତମେ ପୁରାଣ ପ୍ରଭୃତି ପଢ଼ିଲେ ଜାଣି ପାରିବ ଯେ ?

ସ୍ତ୍ରୀ—ଠିକେ ଠିକେ କହୁଥାଅ । ତମ ତୁଣ୍ଡରୁ ଶୁଣିଲେ ଟିକେ ଭଲ ବୁଝି ହେବ; ମୁଁ ଏବେ ଏତେ ପୁରାଣ ଖୋଜିବି କେଉଁଠି ? ଏ ସବୁ ବ୍ରତ କଣ ଆମ ଦେଶରେ ଚଳେ ?

ସ୍ୱାମୀ—କେତେକ ଆମ ଦେଶରେ ଚଳେ, କେତେକ ଅନ୍ୟ ଦେଶରେ ଚଳେ । ଯେ ଯେଉଁଠା କଲା ସେଥିଲାଗି ତ କିଛି ମନା ନାହିଁ ? ଆଚ୍ଛା ଠିକ ଠିକେ କେତେ ଗୋଟି କହିବା ଶୁଣ ।

ଅକ୍ଷୟ ତୃତୀୟା ବ୍ରତ କଥା ଶୁଣ—ବୈଶାଖ ଶୁକ୍ଳପକ୍ଷ ତୃତୀୟା ଦିନ ଏହି ବ୍ରତ କରନ୍ତି । ସେ ଦିନ ପୂର୍ବକାଳରେ ଜଣେ ବ୍ରାହ୍ମଣ ଭିଡ଼ ଶୋଷ କରୁଥିବାବେଳେ ଅନ୍ୟ ଏକ ବ୍ରାହ୍ମଣଦ୍ୱାରେ ପହଞ୍ଚି ପାଣି ମାଗିଲା । ଗୃହସ୍ଥ ବ୍ରାହ୍ମଣ ବଡ଼ ଅଧାର୍ମିକ, ପାଣି ଦେବା ଦୂରେ ଥାଉ ତାକୁ ଦୁଆରୁ ତଡ଼ିଦେଲା; କିନ୍ତୁ ତାର ସ୍ତ୍ରୀ ଅତି ଯତନରେ ଅନେକ ବୁଝାସୁଝା କରି ତୃଷାର୍ତ୍ତକୁ ଜଳ ଦାନ କଲା । ତାର ମାହାତ୍ମ୍ୟରୁ ବ୍ରାହ୍ମଣ ଅଜାଣତରେ ଜଳଦାନ ଫଳ ପାଇଲା ଏବଂ ମଲା ପରେ ଯମ ଏହି ପୁଣ୍ୟ ହେତୁ ତାକୁ ସ୍ୱର୍ଗକୁ ପଠାଇ ଦେଲା; ସୁତରାଂ ଏ ବ୍ରତ କଲେ ପୁଣ୍ୟ-ଧାମକୁ ଯିବ । ଏଥିରୁ ଶିଖିବାକୁ ହେବ ଯେ, ତୃଷାର୍ତ୍ତକୁ ଜଳଦାନ କଲେ ମହାପୁଣ୍ୟ ହେବ । ସୁତରାଂ ଗୃହସ୍ଥ ସଦା-ସର୍ବଦା ତୃଷାର୍ତ୍ତକୁ ଜଳଦାନ କରିବ । ବ୍ରତ କରିବା ସଙ୍ଗେ ସଙ୍ଗେ ଏ କାର୍ଯ୍ୟ ନ କଲେ ବ୍ରତରୁ କିଛି ଶିକ୍ଷା ହେଲା ନାହିଁ, କି କିଛି ଫଳ ନାହିଁ । ବୁଝିପାରିଲ ?

ସ୍ତ୍ରୀ—ହଁ, ବୁଝିପାରିଲି । ଅଘୋର ଚତୁର୍ଦ୍ଦଶୀ କାହିଁକି କରନ୍ତି କହିଲ ?

ସ୍ୱାମୀ—ଭାଦ୍ରମାସର କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଅଘୋର ଚତୁର୍ଦ୍ଦଶୀ । ଏ ଦିନର ପୂର୍ବ ଦିନ ଉପବାସୀ ଥାଇ ଚତୁର୍ଦ୍ଦଶୀ ଦିନ ଶିବପୂଜା କଲେ ଲୋକ ନରକଗାମୀ ହୁଏ ନାହିଁ ।

ଭାଦ୍ର ମାସର ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଅନନ୍ତ ଚତୁର୍ଦ୍ଦଶୀ । ସେହିଦିନ ଅନନ୍ତ ଦେବଙ୍କୁ ପୂଜା କଲେ ଲୋକ ଚତୁର୍ବର୍ଗ ଫଳ ପାଏ । ପାଣ୍ଡବମାନେ ବନବାସରେ ଥିବାବେଳେ ଶ୍ରୀକୃଷ୍ଣ ତାଙ୍କୁ ଏ ବ୍ରତ କଥା କହିଥିଲେ । ଏ ବ୍ରତ କଲେ ଦରିଦ୍ର ଧନୀ ହୁଏ ।

ଅରଣ୍ୟଷଷ୍ଠୀ ବ୍ରତ କଲେ ସ୍ତ୍ରୀ ଭାଗ୍ୟବତୀ ହୁଏ । ଜଣେ ସାଧବ ତାର ସ୍ତ୍ରୀକି ଛାଡ଼ି ବିଦେଶ ଗଲା । ସ୍ୱାମୀ ବିଦେଶ ଗଲାରୁ ସ୍ତ୍ରୀ ଶାଶୁ ଶ୍ୱଶୁରଙ୍କ ସେବା ନ କରି ସର୍ବଦା ସ୍ୱାମୀ ଚିନ୍ତାରେ ରହିଲା । ଶାଶୁ ଶ୍ୱଶୁରମାନେ ବିରକ୍ତ ହେଲେ ଏବଂ କ୍ରମେ ଗୃହରେ ଅଶାନ୍ତିର ଉତ୍ପତ୍ତି ହେଲା । ଅଶାନ୍ତି ଗୃହରୁ ଲକ୍ଷ୍ମୀ ଛାଡ଼ି ଚାଲିଗଲେ । ସେ ସ୍ତ୍ରୀର ନାମ ସୁମନା । ସେ ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ଷଷ୍ଠୀଦିନ ଷଷ୍ଠୀଦେବୀଙ୍କ ପୂଜା କରିବାରୁ ସେ ଶାଶୁଶ୍ୱଶୁରଙ୍କ ସେବାରେ ମନ ଦେଲେ ତାର କଷ୍ଟ ରହିବ ନାହିଁ ବୋଲି ଷଷ୍ଠୀଦେବୀ ଆଜ୍ଞା ଦେଲେ । ସୁମନା ସେହି ବ୍ରତ କରିବାରୁ ତାର ସମସ୍ତ କଷ୍ଟ ଗଲା । ସେହି ଦିନୁ ଏ ବ୍ରତ ଲୋକରେ ପ୍ରଚଳିତ ହେଲା ।

ସଧବା ସ୍ତ୍ରୀମାନେ ଶୂନ୍ୟଶୟନ ବ୍ରତ କଲେ ଯାବଜ୍ଜୀବନ ସଧବା ହୁଅନ୍ତି । ଶ୍ରାବଣମାସ କୃଷ୍ଣ ଦ୍ୱିତୀୟା ଦିନ ଏ ବ୍ରତ କରନ୍ତି । ଏ ଦିନ ଲକ୍ଷ୍ମୀନାରାୟଣ ପୂଜା କରି ଶଯ୍ୟା ଦାନ ଦେବାକୁ ହୁଏ ।

ଏହିପରି ପ୍ରତ୍ୟେକ ବ୍ରତର କିଛି ନା କିଛି ଉଦ୍ଦେଶ୍ୟ ଅଛି ।

ସ୍ତ୍ରୀ—ଋଷିପଞ୍ଚମୀର ଉଦ୍ଦେଶ୍ୟ କଣ କହିଲ ?

ସ୍ୱାମୀ—ଏ ବ୍ରତର ଗୋଟିଏ ସୁନ୍ଦର କଥା ଅଛି । ପୂର୍ବକାଳରେ ସୁମିତ୍ର ନାମରେ ଜଣେ ବ୍ରାହ୍ମଣ ଥିଲା । ବ୍ରାହ୍ମଣୀ ନାମ

ଜାଣୁଥିଲା । ବ୍ରାହ୍ମଣୀ ରଜସ୍ୱଳା ଅବସ୍ଥାରେ ଗୃହଦ୍ରବ୍ୟ ଓ ସ୍ୱାମୀଙ୍କୁ ସ୍ପର୍ଶ କରୁଥିଲା । ଦୁହିଁଙ୍କର ମୃତ୍ୟୁ ହେଲା । ପରଜନ୍ମରେ ବ୍ରାହ୍ମଣ ବଳଦ ଓ ବ୍ରାହ୍ମଣୀ କୁକୁରୀ ହୋଇ ଜନ୍ମ ହେଲେ । ବ୍ରାହ୍ମଣର ଗୋଟିଏ ପୁତ୍ର ଥିଲା । କାଳକ୍ରମେ ସେହି ବଳଦ ଓ କୁକୁରୀ ଆପଣା ପୁତ୍ର ଗୃହରେ ରହିଲେ । ବଳଦରୂପୀ ବ୍ରାହ୍ମଣ ପୁଅର ଜମି ଚାଷ କରେ ଏବଂ କୁକୁରୀରୂପୀ ବ୍ରାହ୍ମଣୀ ପୁଅଘରେ ଅଇଁଠା ମୁ ବିନା ଖାଇ ଥାଏ ।

ବ୍ରାହ୍ମଣ ପୁତ୍ର ସୁମତ ଦିନେ ପିତୃଶ୍ରାଦ୍ଧ ହେବ ବୋଲି ଆପଣା ପତ୍ନୀ ଚନ୍ଦ୍ରାବତୀକୁ ବିଶୁଦ୍ଧ ଭାବରେ ପାକ କରିବାକୁ କହିଥିଲେ । ଚନ୍ଦ୍ରାବତୀ ଭାତ ତରକାରୀ କ୍ଷୀରି ପ୍ରଭୃତି ରନ୍ଧନ କରି ରଖିଦେଲା । ସାପ କେଉଁ ବେଳେ ଆସି କ୍ଷୀରିହାଣ୍ଡିରେ ମୁହଁ ମାରି ବିଷ ତ୍ୟାଗ କରି ଚାଲିଗଲା । କୁକୁରୀ ଏ କଥା ଦେଖିଥିଲା । ଲୋକେ କାଳେ କ୍ଷୀରି ଖାଇଲେ ପ୍ରାଣ ତ୍ୟାଗ କରିବେ, ତେଣୁ ସେ କ୍ଷୀରି ହାଣ୍ଡି ଛୁଇଁ ଦେଲା । ଚନ୍ଦ୍ରାବତୀ ଏହି କଥା ନ ଜାଣି କୁକୁରୀକି ବାଡ଼େଇ ତଡ଼ିଦେଲା । ଅଧିକନ୍ତୁ ଅଇଁଠା ଭାତ ମୁଠା ଖାଇବାକୁ ଦେଲା ନାହିଁ । ପ୍ରାକ୍ତନବଶତଃ କୁକୁରୀ ଓ ବଳଦର ପୂର୍ବଜନ୍ମ ସ୍ମରଣ ଥିଲା । କୁକୁରୀ ଯାଇ ବଳଦକୁ କହିଲା, "ନାଥ, ଆଜି ଦିନଯାକ ମୁଁ କିଛି ଖାଇବାକୁ ପାଇ ନାହିଁ ।" ବଳଦ କହିଲା "କଣ କରିବୁ, ପାପ ଫଳ ଭୋଗ କରିବାକୁ ପଡ଼ିବ ।" ଯେଉଁ ବେଳେ ବଳଦ ଓ କୁକୁରୀ ଏ କଥାବାର୍ତ୍ତା ହେଲାବେଳେ ସୁମତ ଶୁଣି ପାରିଲା ଏବଂ ସେମାନେ ଆପଣା ପିତାମାତା ବୋଲି ବୁଝିପାରି ଉତ୍ତମ ଖାଦ୍ୟଦ୍ରବ୍ୟ ଖାଇବାକୁ ଦେଲେ । ସୁମତ ପିତାମାତାଙ୍କର ଏପରି ଅବସ୍ଥା ବୁଝିପାରି ପର ଦିନ ବଡ଼ ଦୁଃଖିତ ହୋଇ ଋଷିମାନଙ୍କ ନିକଟକୁ

ଯାଇ ଏ କଥା ପ୍ରକାଶ କଲା । ଋଷିମାନେ ସମସ୍ତ ବୃତ୍ତାନ୍ତ ଅବଗତ ହୋଇ ସୁମତିଙ୍କୁ ଋଷିପଞ୍ଚମୀ ବ୍ରତ କରିବାକୁ ଆଦେଶ ଦେଲେ ଏବଂ ସୁମତି ସେହି ବ୍ରତ ଦୃଢ଼ିପାଳନ କରି ପିତାମାତାଙ୍କୁ ଶାପମୁକ୍ତ କଲେ ।

ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ଏହି ବ୍ରତ କଥା କହିଥିଲେ ।

ଏଥିରୁ ବୁଝିପାରିବ ରଜସ୍ୱଳା ନାରୀ କପରି ଭାବରେ ରହିବା ଉଚିତ, ଶାସ୍ତ୍ର ନିୟମ ନ ମାନିଲେ କି ଫଳ ହୁଏ ।

ସ୍ତ୍ରୀ— ଏ ତ ବେଶ୍ କଥାଟିଏ ! ଆଜିକାଲି ଅଉ ଏ କଥାଗୁଡ଼ାକ ଏତେ ମାନୁ ନାହାନ୍ତି । ଏଥିରେ ପାପ ହୁଏ ବୋଲି ତ ମୁଁ ଜାଣି ନ ଥିଲି । ଅଉ ଗୋଟିଏ ବ୍ରତ କଥା କହିଲ ?

ସ୍ୱାମୀ—ଆହେ, କେତେ ବ୍ରତ ଅଛି, ସବୁ କଥା କହିବାକୁ ବେଳ ନାହିଁ । ବ୍ରତର ଉଦ୍ଦେଶ୍ୟଟି ବୁଝିଲେ ହେଲା । ବ୍ରତ କରିବା-ଦ୍ୱାରା ମନର ଏକାଗ୍ରତା ସାଧିତ ହୁଏ । ଯେଉଁ କାର୍ଯ୍ୟ କରିବାକୁ ଇଚ୍ଛା କରିବ ସେ କାର୍ଯ୍ୟ କୌଣସି ବାଧା ବିଘ୍ନ ନ ମାନି କରିବାକୁ ହୁଏ । ଯେଉଁମାନେ ନିଷ୍ଠାରେ ବ୍ରତ କରନ୍ତି ସେମାନେ ଅନ୍ୟ ସବୁ କଥା ଅର୍ଥାତ୍ ଆପଣା ଖାଇବା ପିଇବା ଇତ୍ୟାଦି ଭୁଲିଯାଇ କେବଳ ବ୍ରତ ଉଦ୍ଦେଶ୍ୟରେ ଯେ କାର୍ଯ୍ୟ କରିବାକୁ ହେବ ତାହାହିଁ କରନ୍ତି । ଏହିପରି ବ୍ରତ କରି ଯେଉଁମାନେ ଚଞ୍ଚଳ ମନକୁ ସ୍ଥିର କରି ପାରିବାକୁ ଅଭ୍ୟାସ କରିଛନ୍ତି, ସେମାନେ ଯେଉଁ କାର୍ଯ୍ୟରେ ମନ ଲଗାଇବାକୁ ଇଚ୍ଛା କରିବେ ତହିଁରେ ଲଗାଇ ପାରିବେ । ମନ ସ୍ଥିର କରିବାପାଇଁ ଯୋଗୀ ଋଷିମାନେ ତପସ୍ୟା କରନ୍ତି ଏବଂ ସେହି ଉଦ୍ଦେଶ୍ୟରେ ସଂସାରୀ ଲୋକପାଇଁ ବ୍ରତ ବିଧାନ କରାଯାଇଛି । ସେଗୁଡ଼ିକ ଉତ୍ତମରୂପେ ବୁଝିବାକୁ ହେବ ।

ସ୍ତ୍ରୀ—ବ୍ରତ କଲେ ମନ ସ୍ଥିର ହୁଏ କିପରି, ବୁଝିପାରିଲି ନାହିଁ ।

ସ୍ୱାମୀ—ଅହେ, ବୁଝିଲ ନାହିଁ କି ? ମନ ବଡ଼ ଚଞ୍ଚଳ । ଘୋଡ଼ାକୁ ବାଗ ନ ଦେଲେ ଯେପରି ଘୋଡ଼ା ଏଣେ ତେଣେ ପଳାଏ ମନକୁ ଆୟତ୍ତ କରି ନ ପାରିଲେ ମନ ସେହିପରି କାହିଁ କେଉଁ ଆଡ଼କୁ ଯାଏ ତାର କିଛି ଅବଧି ନାହିଁ । ଏଇଲଗେ ପୂଜା କଥା ଭାବୁଛ ତ ପର କ୍ଷଣରେ ଯାଇ ବାରଣସୀ କଥା ଭାବିବ, ଏଇଲଗେ ଦିଅଁ ଦର୍ଶନକୁ ଇଚ୍ଛା, ପର କ୍ଷଣରେ ମନୁଷ୍ୟ ମାରିବାକୁ ଇଚ୍ଛା । ଏହିପରି ମନଟା ବଡ଼ ଅବାଟିଆ । ମନକୁ ଆୟତ୍ତ କରିବା ଲାଗି ବହୁତ ଉପାୟ କରାଯାଇଛି । ତହିଁ ମଧ୍ୟରୁ ବ୍ରତପାଳନ ମଧ୍ୟ ଗୋଟିଏ । ବ୍ରତ ପାଳନଦ୍ୱାରା ମନୁଷ୍ୟ ମନ ଧର୍ମଆଡ଼କୁ ଯାଏ । ସତ୍‌କଥା ଚିନ୍ତା କରିବାର ସୁବିଧା ଯାଏ । ଭଲକଥା ଶୁଣେ, ନିଷ୍ଠା ଓ ନିର୍ମଳ ହୋଇ କାର୍ଯ୍ୟ କରିବାକୁ ଶିଖେ, ଇତ୍ୟାଦି ଅନେକ ଉପକାର ଅଛି ।

ଯେତେ ଧର୍ମକାର୍ଯ୍ୟ କରିବାର ବିଧି ତାର ଉଦ୍ଦେଶ୍ୟ, ମନୁଷ୍ୟ ମନ ଯେପରି ସବୁବେଳେ ପବିତ୍ର କଥା ସଂସର୍ଗରେ ରହେ । ସଙ୍ଗ ଦୋଷରୁ ମନୁଷ୍ୟ ମନ୍ଦ ବାଟରେ ଯାଏ, ପୁଣି ସଙ୍ଗଗୁଣରୁ ମନୁଷ୍ୟ ଭଲ ବାଟରେ ଯାଏ । ସେଥିଲାଗି ମନୁଷ୍ୟ ସବୁବେଳେ ଯେପରି ସାଧୁ ସଙ୍ଗରେ ରହିବ, ଈଶ୍ୱର ନାମ ଶୁଣିବ, ଉତ୍ତମ ଲୋକମାନଙ୍କ ଚରିତ ଶୁଣିବ, ଶାସ୍ତ୍ର ନାନା ଭାବରେ ସେପରି ଉପଦେଶ ଦେଇ ଯାଇଛନ୍ତି ।

ସ୍ତ୍ରୀ—ସଙ୍ଗ ଦୋଷରୁ ମଣିଷ ଖରାପ ହୁଏ କିପରି ମ ?

ସ୍ୱାମୀ—ଅହେ ସଂସାରରେ ପାପପୁଣ୍ୟ ଭଲମନ୍ଦ ଏପରି ଯୋଡ଼ିଏ ବାଟ ଅଛି ।

ସ୍ତ୍ରୀ—ହଇ ହେ, ଭଗବାନ ଏପରି ଦୁଇଟି ବାଟ ତାହାଙ୍କ ଭିଆଣ କଲେ ?

ସ୍ଵାମୀ—ଭଗବାନଙ୍କ ରାଜ୍ୟରେ ସବୁ ଅଛି, ଭଲ ଅଛି ମନ୍ଦ ଅଛି ;
ମନୁଷ୍ୟ ସଂସାରକୁ ଆସି ଯେଉଁ ବାଟ ବାଛିନେଇ ପାରିବ,
ସେପରି ଫଳ ଭୋଗ କରିବ । ଭଲ ବାଟରେ ଗଲେ ଭଲ;
ମନ୍ଦ ବାଟରେ ଗଲେ ମନ୍ଦ । ଭଲ ବାଟରେ ଯିବା କଷ୍ଟ;
ଅନେକ ତ୍ୟାଗ କରିବାକୁ ପଡ଼େ । ତ୍ୟାଗ ଅର୍ଥ ନିବୃତ୍ତି ଅର୍ଥାତ୍
କୌଣସି ସୁଖଭୋଗ ଲାଗି ଇଚ୍ଛା ନ କରିବା ।

ସ୍ତ୍ରୀ—ନିବୃତ୍ତି କଣ ବୁଝି ପାରିଲି ନାହିଁ ।

ସ୍ଵାମୀ—ପ୍ରବୃତ୍ତି ଓ ନିବୃତ୍ତି ଦୁଇଟି ବାଟ । ଯେଉଁ ବାଟରେ ଗଲେ
କେବଳ ଭଲ ସୁଖ ଭୋଗ ଇଚ୍ଛା ବଢ଼େ ସେଇଟି ପ୍ରବୃତ୍ତି
ମାର୍ଗ, ପୁଣି ଯେଉଁ ବାଟରେ ଗଲେ ସୁଖ ଭୋଗ ଇଚ୍ଛା କ୍ଷୀଣ
ହୋଇ ଆସେ ସେଇଟା ନିବୃତ୍ତି ମାର୍ଗ । ପୁଅ ବଜାରକୁ ଯାଇ
ଦେଖେ ମିଠେଇ ଥୁଆ ହୋଇଛି । ଦେଖି ଇଚ୍ଛା ହେଲା
ମିଠେଇ ଖାଇବ । କିପରି ମିଠେଇ ପାଇବ ? ହାତରେ ଧନ
ନାହିଁ । ଘରକୁ ଚାଲ, ମା ବାପଙ୍କୁ ପଇସା ମାଗିଲା, ସେମାନେ
ଦେବେ ଦେଲେ ପିଲା ଆନନ୍ଦରେ ବଜାରକୁ ଯାଇ ମିଠେଇ
କିଣି ମଜା ମାରିଲା । କିନ୍ତୁ ମା ବାପ ଯେବେ ପଇସା ନ ଦେଲେ
କାନ୍ଦ, ଗଡ଼, ମୁଣ୍ଡମାର, ଭୂଇଁ କଣ୍ଟରେ ଛଟପଟ ହେଲା । ଏକଥା
ଦେଖି ମା ବାପ ପଇସା ଦେଇ ପୁଅ ମନ ସନ୍ତୋଷ କଲେ,
ମାତ୍ର ପୁଅର ଇଚ୍ଛା ବଢ଼ିଲା; ଯେତେବେଳେ ଯାହା ଦେଖିଲା
ଭୋଗ କରିବାକୁ ମନ ବଳାଇଲା । ଜାଣେ ସେ ଜାଣେ
କାନ୍ଦିଲେ ପଇସା ମିଳିବ । ଏହିପରି ତାର ପ୍ରବୃତ୍ତି ବଢ଼ିଲା ।
ମାତ୍ର ଯାହାର ପ୍ରବୃତ୍ତି ନାହିଁ ସେ ବଜାରକୁ ଗଲେ ମିଠାଇ
ଦେଖି ତା ପାଟିରୁ ଲାଳ ବହିବ ନାହିଁ । ମୋତେ ସେ ଦରକାର
ଇଚ୍ଛା ନାହିଁ କି ସ୍ପୃହା ନାହିଁ; ସୁତରାଂ ମୋତେ ଆଉ କାନ୍ଦି

ମୁଣ୍ଡ ବାଡ଼େଇବାକୁ ପଡ଼ଲା ନାହିଁ, ସେ କଷ୍ଟ ଘୁଞ୍ଚିବାକୁ ହେଲା। ସୁତରାଂ ନିବୃତ୍ତିରେ ସୁଖ, ପ୍ରବୃତ୍ତିରେ ଦୁଃଖ। ବ୍ରତ କଲେ ନିବୃତ୍ତି ମାର୍ଗ ଶିକ୍ଷା କରିବାକୁ ହୁଏ।

ସ୍ତ୍ରୀ—କିପରି ? ନିବୃତ୍ତି ଧର୍ମ କିପରି ଶିକ୍ଷା ଦିଏ ?

ସ୍ୱାମୀ—ଆଗେ କହିଲ ନିବୃତ୍ତି ଧର୍ମ ଭଲ କି ପ୍ରବୃତ୍ତି ଧର୍ମ ଭଲ ?

ସ୍ତ୍ରୀ—ହଇ ହେ, ତମେ ଯେପରି କହୁଛ ନିବୃତ୍ତି ଭଲ। ଯେ କଣ ଯାହା ବାଞ୍ଛା କରେ ସେ କଣ ତାହା ସବୁ ପାଏ ? କେତେ କଥା ବେଳେ ବେଳେକେ ମନେ ହୁଏ—ରଜା ହେବି, ହାତୀ ଚଢ଼ିବି, ଠେକା ଗଦି ଉପରେ ବସିବି, ସୁନାରେ ଦେହ ଛନ୍ଦିଣି କରିବି, ନିତି ଅମୃତ ଭୋଜନ କରିବି, ଖଟପଲଙ୍କରେ ଶୋଇବି ଏପରି କେତେ କଥାକୁ ମନ ଦଉଡ଼େ; କାହିଁ ସବୁ କଥା କଣ କପାଳକୁ ଘଟେ ? ଫଳ ହୁଏ ମନରେ କଷ୍ଟ; ଆମ କପାଳେ ନାହିଁ, ଦାଉଁ କାହିଁକି ଆମ ପ୍ରତି ଦେବ ଅନୁଗ୍ରହ କଲେ, ତେଲିଆ ମୁଣ୍ଡରେ ତେଲ, ଇତ୍ୟାଦି ନାନା କଥା ମନେ ପଡ଼େ। ମନରେ କିଛି ବାଞ୍ଛା ନ କଲେ ଏ କଷ୍ଟ ତ ଆଉ ପାଇବି ନାହିଁ ? ଏ କଥା ଠା ହେଲେ ହେବ ନ ହେଲେ ନାହିଁ ଏପରି ବାଞ୍ଛା ମନରେ ଥିଲେ ଅନେକ ସମୟରେ କଷ୍ଟ ମିଳେ; ମାତ୍ର ଏପରି ବାସନା ମନରେ ନ ଥାଇ ଯେତେବେଳେ ଯାହା ମିଳିଲା ତହିଁରେ ସନ୍ତୁଷ୍ଟ ଥିଲେ କିଛି କଷ୍ଟ ନାହିଁ। ତେବେ ମୁଁ ବୁଝୁଛି ନିବୃତ୍ତି ଧର୍ମ ଅଚ୍ଛା ବାଟେ।

ସ୍ୱାମୀ—ତେବେ ଶୁଣ, ବ୍ରତ ପାଳନ କିପରି ଏ ଧର୍ମ ଶିକ୍ଷା ଦିଏ। ଦେଖ, ପ୍ରତ୍ୟେକ ବ୍ରତ ପାଳନ କରିବା ଲାଗି ଯେ କୌଣସି ପ୍ରକାର ସୁଖ ଭୋଗରୁ ନିବୃତ୍ତ ହେବାକୁ ହେବ।

ସ୍ତ୍ରୀ—କିପରି, ଏ କଥା ତ ବୁଝି ପାରିଲି ନାହିଁ ?

ସ୍ୱାମୀ—ଅଚ୍ଛା ଶୁଣ, ଏକାଦଶୀ ଦିନ ପାନଖାଇବା ନିଷେଧ, ଭୋଜନ ନିଷେଧ । କାର୍ତ୍ତିକ, ମାଘ ଓ ବୈଶାଖ ମାସମାନଙ୍କରେ ହବିଷ୍ୟ କଲେ ଅନେକ କଥାରୁ ନିବୃତ୍ତ ରହିବାକୁ ହେବ, ପାନଖିଆ ଧୂଆଁ ଆଦି ମାଦକ ଦ୍ରବ୍ୟ ସେବନ ନିଷେଧ, ମାଛ ମାଂସ ପ୍ରଭୃତି ଅଖାଦ୍ୟ ନିଷେଧ, ତେଲ ହଳଦି ପ୍ରଭୃତି ଲଗାଇବା ନିଷେଧ, ଇତ୍ୟାଦି ଅନେକ ଗୁଡ଼ିଏ ସୁଖ ଭୋଗରୁ ନିବୃତ୍ତ ରହିବାକୁ ହୁଏ ନାହିଁ କି ? ସଂସାରୀ ଲୋକ ସହଜରେ ନିବୃତ୍ତି ମାର୍ଗ ଅବଲମ୍ବନ କରି ପାରିବ ନାହିଁ ବୋଲି ଶାସ୍ତ୍ରକାରମାନେ ଏ ସମସ୍ତ ଉଦ୍ଦେଶ୍ୟ ଗୁପ୍ତଭାବରେ ଶିକ୍ଷା ଦେବା ଲାଗି ନାନା-ପ୍ରକାର ଧର୍ମାଧର୍ମ ସୃଷ୍ଟି କରି ଯାଇଅଛନ୍ତି । ଭଲ କଥା ଦିନେ କଲେ ବି ଲାଭ ଅଛି । ଭଲ କଥା ଦିନେ ଶୁଣିଲେ ବି ଲାଭ ଅଛି । ଭଲ ବାଟରେ ଦିନେ ଚାଲିଲେ ମଧ୍ୟ ଲାଭ ଅଛି ।

ସ୍ତ୍ରୀ—ଏତେ ଭିତରି କଥା କିଏ ଜାଣେ ମ ? ଆମକୁ ଏପରି କିଏ ବୁଝାଇ ଦେଉଥିଲେ ସିନା ହୁଅନ୍ତା ?

ସ୍ୱାମୀ—ଏବେ ତ ବୁଝିଲ ? ଆଜି ଏତିକି ଥାଉ ।

—————

## ଚତୁର୍ଦ୍ଦଶ ପରିଚ୍ଛେଦ

ସ୍ତ୍ରୀ—ହଇ ହେ, କି ବହି ପଢ଼ୁଛ କି ?

ସ୍ୱାମୀ—ଏ ଇତିହାସ ବହି । ତୁମେ ଏଥିରୁ କଣ ବୁଝିବ ?

ସ୍ତ୍ରୀ—ମ, ଆମକୁ ବୁଝାଇ ଦେଲେ ଆମେ ବୁଝିବୁ ନାହିଁ ?

ସ୍ୱାମୀ—ହଁ, ବୁଝାଇ ଦେଲେ କିଛି ବୁଝି ପାରିବ ; କିନ୍ତୁ ଥରେ ବୁଝି ପାରିଲେ ଆଉ ଛାଡ଼ିବାକୁ ମନ ହେବ ନାହିଁ ।

ସ୍ତ୍ରୀ—ଏଥିରେ ଯେବେ ଏପରି ଭଲ କଥା ଅଛି, ତେବେ କହିଲ କି କଥା ଏଥିରେ ଅଛି ?

ସ୍ୱାମୀ—ଇତିହାସରେ ସବୁ ପୁରୁଣା ଘଟଣାମାନ ଲେଖାଥାଏ, ଅର୍ଥାତ୍ କେବେ କେଉଁ ଦେଶରେ କଣ ଘଟିଥିଲା, କିପରି ରାଜାମାନେ ରାଜତ୍ୱ କରୁଥିଲେ, କିପରି ବୀରମାନେ ଲଢ଼େଇ କରୁଥିଲେ, ଦେଶର ଅବସ୍ଥା କଣ ଥିଲା, ଇତ୍ୟାଦି ସବୁରିକି କଥା ଲେଖାଥାଏ । ପୁରାଣରେ ଯେପରି ନାନା ଚରିତ ଲେଖାଥାଏ, ଇତିହାସରେ ସେହିପରି ଲେଖାଥାଏ । ପୁରାଣ ଏକ ପ୍ରକାର ଇତିହାସ ବୋଲିଲେ ଚଳେ । ପୃଥିବୀରେ ଯେତେ ଦେଶ ଅଛି ସବୁ ଦେଶର ହାଲଚାଲ ଇତିହାସରେ ଲେଖାଥାଏ ।

ସ୍ତ୍ରୀ—ଆଚ୍ଛା, ଆମ ଦେଶର ଇତିହାସ ଅଛି ?

ସ୍ୱାମୀ—ନାହିଁ କଣ, କିଣା ଅଧିକ ହୋଇଅଛି ।

ସ୍ତ୍ରୀ—ଗଲା କଥା ଗଲା, ଆଉ ସେ କଥା ପଢ଼ି କଣ ଲାଭ ହେବ ? ଜାଣିଲେ କଣ ଉପକାର ମିଳିବ ?

ସ୍ୱାମୀ—ଉପକାର ବହୁତ । ଆଚ୍ଛା, ତମେ ପରା ସେ ଦିନ କହୁଥିଲ ରାମସିଂହଙ୍କର ଘର କେଡ଼େ ପୁରୁଣା ଘର, ତାଙ୍କ ବାପ ଅଜା ଥିଲେ କଣ, ସେ ହେଲେ କଣ । ଏ କଥା କାହିଁକି କହିଲ ?

ସ୍ତ୍ରୀ—ମୁଁ କଣ ଅନ୍ୟାୟ କହିଲି ! ରାମସିଂହ କାହା ପୁଅ କାହା ନାତି ଥିଲେ, ଏବେ କଣ ହେଲେ, ଟିକିଏ ତାଙ୍କୁ ପୂର୍ବ ଘର କଥା ମନେ ପଡ଼ୁନାହିଁ ? ପୁଅ ଯୋଗ୍ୟ ହେଲେ ସିନା ବାପ ଅଜାଙ୍କ ନାମ ବାହାରେ, ଅଯୋଗ୍ୟ ହେଲେ ଆଉ କଣ କେହି ପ୍ରଶଂସା କରିବେ ?

ସ୍ୱାମୀ—ତେବେ ପୁରୁଣା କଥାର କିଛି ଉପକାର ନାହିଁ ବୋଲି କହୁଛ କିପରି ? ଯାହା ଜଣକ ଲାଗି ସତ୍ୟ, ତାହା ଗୋଟିଏ ଜାତି

ପ୍ରତି ପଢ଼ୁ। ଓଡ଼ିଆ ଜାତି ଥିଲା କିଣ, ଏବେ ହୋଇଛି କଣ। ଏ କଥା ଇତିହାସ ନ ଦେଖିଲେ କେଉଁଠାରୁ ବୁଝିବ ? ଇତିହାସରେ ଆମ ଜାତିର ପୁରୁଣା କଥାମାନ ଲେଖାଥାଏ। ଇତିହାସ ପଢ଼ିଲେ ଆମେମାନେ ବୁଝିପାରିବା ଯେ ଆମ ପୂର୍ବ ପୁରୁଷମାନେ କେଉଁପରି ପାଠୁଆ ଥିଲେ, ଧନୀ ଥିଲେ, କାରିଗରି ଜାଣୁଥିଲେ, ପୋଥି ଲେଖୁଥିଲେ, ଯୁଦ୍ଧ କରି ଶତ୍ରୁମାନ ପରାସ୍ତ କରୁଥିଲେ, ଆମେମାନେ ସେମାନଙ୍କ ତୁଳନାରେ କଣ କରୁଛୁ ? ଆମେମାନେ ସେମାନଙ୍କର ଉପଯୁକ୍ତ ପୁଅ ହୋଇଛୁ ବୋଲି ପିଲୃଲୋକମାନେ ଖୁସି ନ ହେବେ କି ? ଆମ୍ଭେମାନେ ଯେବେ ପୁରୁଣା କଥା ଭୁଲିଯିବା, ତେବେ ଦିନେ ଆମେ ବାପ ମାଆଙ୍କୁ ଭୁଲିଯିବା। ସେମାନେ ପାଣିଏ ପାଣି ପାଇ ପାରିବେ ନାହିଁ। ଲୋକର ଅଙ୍କଣ୍ଠ ହେଲା ବେଳେ ସେ ପଛକୁ ଅନାଏ। ଯେବେ କେହି ଲୋକ ଆସୁଥିବାର ଦେଖେ ତା ମନରେ ଦମ୍ଭ ଆସିଯାଏ ହୁଏ; ପଛରେ କାହାକୁ ନ ଦେଖିଲେ ନିରାଶ ହୁଏ। ଲୋକର ବିପଦ ପଡ଼ିଲେ ସେ "ମା ଲୋ, ବାପ ଲୋ" କହି ପକାଏ। ମା ବାପ ନାମ ମନେ ପଡ଼ିଗଲେ ଲୋକ ଦେହରେ ହିମତ ହୁଏ। ମୋ ବାପ ଏପରି ଥିଲା, ସେପରି ଥିଲା କହି ଗର୍ବ କରେ। କରେ ନାହିଁ ?

ସ୍ତ୍ରୀ—ହଁ ହଁ, କରନ୍ତି ନାହିଁ କଣ ? ଆମ ମା ଥିଲା ଯେ ଗୋଟିଏ ଅଲମାରି ପେଡ଼ିରେ କେଉଁ କାଳର କେତେ କାଗଜ ରଖିଥିଲା, କଣ ଦରକାର ପଡ଼ିଲେ ସେ ପେଡ଼ି ଖୋଲାଏ। ମୁଁ ଦିନେ କହିଲି "ଏ ପେଡ଼ିଟାକୁ ପକାଇ ଦେବା।" ମା କହିଲା "ଅଲୋ ଝିଅ, ତୁ କଣ କହୁଛୁ। କେତେ କାଳର ଘରକରଣା କାଗଜ ଏଥିରେ ଅଛି, ପକାଇ ଦେଲେ ଆଉ ଲୋଡ଼ିଲେ ମିଳିବ ନାହିଁ।

ପୁରୁଣା ଘର ବୋଲି କେତେଲୋକ ଆଉ କେଉଁଠି କିଛି ନ ପାଇଲେ ଏଠାକୁ ଦଉଡ଼ି ଆସୁଛନ୍ତି । ଯେ ନୂଆ କରି ଘର କରୁଛନ୍ତି, ତାଙ୍କ ଘରେ ପୁରୁଣା ଜିନିଷ ମିଳିବ ନାହିଁ ।" ସେହି ଦିନୁ ମୁଁ ଯାହା ପୁରୁଣା ଜିନିଷ ପାଏ ସେହି ପେଡ଼ିରେ ରଖିଦିଏ ।

ସ୍ୱାମୀ—ମା କଣ ମିଛ କହିଲେ ? କହେ, ଆଲମାରି ପେଡ଼ିଟି ଯେପରି ଆମ ଘରର ସାର ଦ୍ରବ୍ୟ, ଇତିହାସଟି ସେହିପରି ଯେ ଯାହା ଜାତିର ଆଲମାରି ପେଡ଼ି; ସେଥିରେ ପୁରୁଣା କଥା ଲେଖା ଥାଏ । ସେ କଥା ପଢ଼ିଲେ ମନେ ହୁଏ, ଆମ ଓଡ଼ିଆ ଜାତି ଥିଲା କଣ ଏବେ ହେଲା କଣ । ଆମେମାନେ ବାପ ଅଜାଙ୍କ ପରି କାର୍ଯ୍ୟ କଲେ ପୁଣି ବଡ଼ ହେବା ।

ସ୍ତ୍ରୀ—ଆମ ପୂର୍ବ ପୁରୁଷମାନେ କଣ କରିଥିଲେ କହିଲ ଭଲା ?

ସ୍ୱାମୀ—ସେମାନେ ଯେତେବେଳେ ରାଜା ହୋଇଥିଲେ, ଉତ୍ତରରେ ଗଙ୍ଗାନଦୀଠାରୁ ଦକ୍ଷିଣରେ ରାମେଶ୍ୱର ପର୍ଯ୍ୟନ୍ତ ରାଜ୍ୟ ଅଧିକାର କରିଥିଲେ । ଆମ ପୂର୍ବପୁରୁଷମାନେ ବଡ଼ଦେଉଳ, ଭୁବନେଶ୍ୱର ଦେଉଳ, କୋଣାର୍କ ଦେଉଳ ତୋଳାଇଥିଲେ । ସେମାନେ ବୀରପୁରୁଷ ଥିଲେ, ଶତ୍ରୁକୁ ରାଜ୍ୟରେ ପୂରିବ ଦେଉ ନ ଥିଲେ, କେତେଠାରେ କେତେ ବଡ଼ ବଡ଼ ପୋଖରୀ ଖୋଳାଇ ଥିଲେ, ଆମ ଦେଶରେ ଭଲ ଲୁଗା ବୁଣା ହେଉଥିଲା । ଆମ ଦେଶ ଲୋକେ ବୋଇତରେ ଯାଇ ବଣିଜ ବେପାର କରୁଥିଲେ । ତୁମେ ପରା ସେ ଦିନ କୋଣାର୍କ ଯାଇଥିଲ ? ଦେଖିଲ ଟିକି ସେ ଦେଉଳରେ କିପରି ଛୁଞ୍ଚି ମୁନରେ କାମ ହୋଇଛି ?

ସ୍ତ୍ରୀ—ହଇହେ, ମୁଁ ତ ସେ କାମ ଦେଖି ମୋ ଆଖି ଖୋସି ହୋଇଗଲା ! ତାକୁ କଣ ମଣିଷ କରିଛନ୍ତି ? ସେ ଭଗବାନଙ୍କ ମାୟା ! ଭଗବାନ ଆପେ କରିଥିବେ ନା ?

ସ୍ୱାମୀ—ବାସ୍ତବିକ ସେ ସେପରି କାମ, ତାକୁ ଦେଖିଲେ ଆଜି କିଏ
କିଏ କହିବ ଯେ ଏ ଆମ ପୂର୍ବ ପୁରୁଷ ମାନଙ୍କ ହାତ କାମ ?
ସେ କାଳ ପଖାଳ ତ ଆଉ ନାହିଁ, ସେ କାଳ ଲୋକଙ୍କ ଏ କାମ
ଅତି ସହଜ ଥିଲା । ଆମେ ତ ହୀନ ହୋଇ ଗଲୁଣି, ଆମେ
କିପରି କହି ପାରିବା ଏ ମଣିଷ ହାତ କାମ ? ଆମକୁ ତ
ବଡ଼ବଡ଼ ଲାଗୁଛି । ଏମନ୍ତ କାରିଗରୀ ଆମ ଲୋକେ ଜାଣିଥିଲେ ।
ଏ କାମ ଦେଖିବାକୁ କେତେ କେଉଁଠୁ ଲୋକେ ଧାଇଁ
ଆସୁଛନ୍ତି । ଆମେ ତ ଅଯୋଗ୍ୟ, ଆମେ କିପରି ଧରିପାରିବା ?
କିନ୍ତୁ ଆମେ ଏଇଲାଗେ ଯେବେ ଏ ଦେଉଳକୁ ଦେଖି ମଣି
କରିବା—କଣ ଆମ ବାପ ଅଜା ଯେଉଁ କାମ କରିଥିଲେ ଆମେ
ସେ କାମ କରିପାରିବୁ ନାହିଁ ? ଆମେ ତ ତାଙ୍କର ପୁଅ ନାତି,
ତାଙ୍କର ରକ୍ତ ତ ଆମ ଦେହରେ ବହୁଛି ? ଆମେ ପାରିବା
ନାହିଁ ? ଉଠ ଅଣ୍ଟା, ଲାଗ କାମରେ । ଅଳସୁଆ ହୋଇ ଆମେ
ମାଟି ହେଲୁଣି । ଆସ, ଆମ ପୂର୍ବ କୀର୍ତ୍ତି ଆମେ ଉଦ୍ଧାର
କରିବା । ପାଞ୍ଚ ବର୍ଷ ପରେ ଦେଖିବ, ଓଡ଼ିଶା ଲୋକେ ଆଉ
ପ୍ରକାରେ ହୋଇଯିବେ ? "ଓଡ଼ିଆ ମେଣ୍ଢା" "ଓଡ଼ିଆ କୁଲି"
"ଓଡ଼ିଶା ବେଙ୍ଗେଶ୍ୱର ଦେଶ" ଏ କଥା ଆଉ ଶୁଣିବାକୁ ପଡ଼ିବ
ନାହିଁ । ଆମ ପିଲାମାନେ ଯେବେ ଏହି କଥାମାନ ମନେ ରଖି
କାର୍ଯ୍ୟ କରିବେ, ତେବେ ଦେଖିବ ଓଡ଼ିଶା ଆଉ ପଛେ ରହିବ
ନାହିଁ ।

ସ୍ତ୍ରୀ—ଓଡ଼ିଆ ମେଣ୍ଢା ବୋଲି କିଏ କହୁଛି ମ ?

ସ୍ୱାମୀ—କହିଲେ ଦୋଷ କଣ ? ମୁଁ ଏବେ ଆମ କାହିଁକି ବାଜସ୍ୱକ
କଣ କହୁଛି ? ଯା, ଯା, ଭଲେ ବସ, ମୂର୍ଖଠାକୁ, ମଇଲା ଲେଙ୍ଗୁ
ହୋଇ ଆମ ସାଙ୍ଗ ସରିସା ହେବାକୁ ବସିଛି ? ସେହିପରି

ଯେଉଁ ଜାତିମାନେ ଓଡ଼ିଆଙ୍କଠାରୁ ବେଶି ସଭ୍ୟ, ସେମାନେ ଆମକୁ ସେହିପରି କହିଲେ ଦୋଷ କଣ ?

ସ୍ତ୍ରୀ—ଜଗନ୍ନାଥ ଦେଉଳ ଆମ ପୂର୍ବପୁରୁଷ କରିଥିଲେ ନାକି ? ସେଠାକୁ ତ ରାଜ୍ୟର ଲୋକ ଆସୁଛନ୍ତି ।

ସ୍ୱାମୀ—ସେଥିକି ଅଛି ବୋଲି ତ ଓଡ଼ିଆଙ୍କର ନିକିଏ ମାନ ମହତ୍ତ୍ୱ ଅଛି । ପୂର୍ବକାଳରେ ଲୋକଙ୍କର ଟଙ୍କା ହେଲେ ସେମାନେ ଦେଉଳ ତୋଳୁଥିଲେ, ପୋଖରୀ ଖୋଳୁଥିଲେ, ଘାଟବାଟମାନ ତିଆରି କରାଉଥିଲେ; ତଦ୍ୱାରା କେତେ ଲୋକଙ୍କର କେତେ ଉପକାର ହେଉଅଛି କହିଲ ଦେଖି ? ଆମର ଆଉ କଣ ସେ ଆଡ଼କୁ ମନ ଅଛି । ଏବେ ଟଙ୍କା ହେଲେ କେବଳ ନିଜସୁଖ ଖୋଜି । ଆମ ପୂର୍ବପୁରୁଷମାନେ ଯେପରି ଧାର୍ମିକ ଥିଲେ, ଆମେ ତାର ଓଲଟା । ଆଗେ ଲୋକମାନଙ୍କ ମଧ୍ୟରେ ଯେପରି ବିଶ୍ୱାସ ଥିଲା ଏବେ ସେପରି ନାହିଁ । ସେଥିରୁ ପାପର ଫଳ ଆମେ ଭୋଗୁ ଅଛୁଁ । ଏହି ସବୁ କାରଣରୁ ଆମ ପୁରୁଣା ଇତିହାସ ଦେଖି ଆମ ପୂର୍ବପୁରୁଷମାନେ ଯେଉଁ ବାଟରେ କାମ କରୁଥିଲେ ଆମେ ସେହିପରି କାମ କଲେ ନାମ ପାଇବା । ଆମ ପିଲାମାନେ ପୁରୁଣା କଥା ନ ଶୁଣିଲେ ନାକ ଟେକି ଦିଅନ୍ତି, ପୂର୍ବପୁରୁଷ-ମାନଙ୍କୁ ଗୋଡ଼ ତଳେ ରଖି ଦିଅନ୍ତି, ହସରେ ଉଡ଼ାଇ ଦିଅନ୍ତି; କିନ୍ତୁ ଯେବେ ବିଦ୍ୟାଶୂନ୍ୟ ଲୋକଚୂଡ଼ାମଣି: ଗର୍ବ ଅହଙ୍କାର ବିଳାସ ବାସନା ମନରେ ପୂର୍ଣ୍ଣ, ଈଶ୍ୱରଭକ୍ତି ନଦାରଦ, ବାପ ଅଜାମାନେ ବଡ଼ଦେଉଳ ତୋଳିଗଲେ, ପୁଅମାନେ ଜଗନ୍ନାଥ ଦର୍ଶନକୁ କୁସଂସ୍କାର ତଳେ ଠେଲିଲେଣି, ଏଥିରେ ଆମମାନଙ୍କର ମଙ୍ଗଳ ହେବ କିପରି କହିଲ ଦେଖି ? ଇତିହାସ ନ ପଢ଼ିଲେ ଆମକୁ ଆମେ ଚିହ୍ନି ପାରିବା ନାହିଁ ।

ଯେଉଁ ଜାତିମାନେ ଓଡ଼ିଆଙ୍କଠାରୁ ବେଶି ସଭ୍ୟ, ସେମାନେ ଆମକୁ ସେହିପରି କହିଲେ ଦୋଷ କଣ ?

ସ୍ତ୍ରୀ—ଜଗନ୍ନାଥ ଦେଉଳ ଆମ ପୂର୍ବପୁରୁଷ କରିଥିଲେ ଠିକ ? ସେଠାକୁ ତ ସବୁ ରାଜ୍ୟର ଲୋକ ଆସୁଛନ୍ତି ।

ସ୍ୱାମୀ—ସେଥିକି ଅଛି ବୋଲି ତ ଓଡ଼ିଆଙ୍କର ଟିକିଏ ମାନ ମହତ୍ତ୍ୱ ଅଛି । ପୂର୍ବକାଳରେ ଲୋକଙ୍କର ଟଙ୍କା ହେଲେ ସେମାନେ ଦେଉଳ ତୋଳୁଥିଲେ, ପୋଖରୀ ଖୋଳୁଥିଲେ, ଘାଟବାଟରେ ବୃକ୍ଷ ଲଗାଉଥିଲେ; ତଦ୍ଦ୍ୱାରା କେତେ ଲୋକଙ୍କର କେତେ ଉପକାର ହେଉଥିଲା କହିଲ ଦେଖି ? ଆମର ଆଉ କଣ ସେ ଦିଗକୁ ମନ ଅଛି । ଏବେ ଟଙ୍କା ହେଲେ କେବଳ ନିଜସୁଖ ଲାଗି । ଆମ ପୂର୍ବପୁରୁଷମାନେ ଯେପରି ଧାର୍ମିକ ଥିଲେ, ଆମେ ତାର ଓଲଟା । ଆଗେ ଲୋକମାନଙ୍କ ମଧ୍ୟରେ ଯେପରି ବିଶ୍ୱାସ ଥିଲା ଏବେ ସେପରି ନାହିଁ । ଏସବୁ ପାପର ଫଳ ଆମେ ଭୋଗୁଅଛୁଁ । ଏହି ସବୁ କାରଣରୁ ଆମ ପୁରୁଣା ଇତିହାସ ଦେଖି ଆମ ପୂର୍ବପୁରୁଷମାନେ ଯେଉଁ ପଥରେ କାମ କରୁଥିଲେ ଆମେ ସେହିପରି କାମ କଲେ ନାମ ପାଇବା । ଆମ ପିଲାମାନେ ପୁରୁଣା କଥା ନ ଶୁଣିଲେ ନାକ ଟେକି ଦିଅନ୍ତି, ପୂର୍ବପୁରୁଷ-ମାନଙ୍କୁ ଖାଲି ତଳେ ରଖି ଦିଅନ୍ତି, ହସରେ ଉଡ଼ାଇ ଦିଅନ୍ତି; କିନ୍ତୁ ଆପେ ବିଦ୍ୟାଶୂନ୍ୟ ହେଲେହେଁ ବୁଦ୍ଧିଃ ଗର୍ବ ଅହଙ୍କାର ବିଳାସ ବାସନା ମନରେ ପୂର୍ଣ୍ଣ, ଈଶ୍ୱରଭକ୍ତି ନଦାରଦ, ବାପ ଅଜାମାନେ ବଡ଼ଦେଉଳ ତୋଳିଗଲେ, ପୁଅମାନେ ଜଗନ୍ନାଥ ଦର୍ଶନକୁ କୁସଂସ୍କାର ତଳେ ଲେଖିଲେଣି, ଏଥିରେ ଆମମାନଙ୍କର ମଙ୍ଗଳ ହେବ କିପରି କହିଲ ଦେଖି ? ଇତିହାସ ନ ପଢ଼ିଲେ ଆମକୁ ଆମେ ଚିହ୍ନି ପାରିବା ନାହିଁ ।

ସ୍ତ୍ରୀ—ଅଚ୍ଛା, ଆମ ଦେଶ ଇତିହାସ ପଢ଼ିଲେ ଆମ ଦେଶ କଥା ଜାଣିବା, ଆମ ପୁଅ ତ ଆଉ ଗୁଡ଼ାଏ କେଉଁ ଦେଶର ଇତିହାସ ପଢ଼ୁଛି—କାହିଁକି ?

ସ୍ୱାମୀ—ଅହେ, ପୃଥିବୀରେ କଣ ଏହି ଗୋଟିକ ଓଡ଼ିଆ ଜାତି ଅଛନ୍ତି ? ଅନେକ ଦେଶ ଅଛି, ଅନେକ ଜାତି ଅଛନ୍ତି । ସବୁ ଜାତିର ଇତିହାସ ଅଛି । ଆମେ ଆମ କଥା ଜାଣିବା ସତ, କିନ୍ତୁ ଆଉ ଅନ୍ୟ ଜାତିମାନଙ୍କ କଥା ଜାଣିଲେ ଆମ ଜ୍ଞାନ ବଢ଼ିବ । ସେ ଜାତିର ଯାହା ଭଲ ଗୁଣ ଥିବ ଶିଖିବା; ସେମାନେ କିପରି କାର୍ଯ୍ୟ କରି ବଡ଼ ହୋଇଥିଲେ ଜାଣିବା; ଆମ ଇତିହାସ ଅପେକ୍ଷା ସେଥିରେ ଯାହା ଅଧିକା ଭଲ କଥା ଥିବ, ତାଙ୍କୁ ଶିକ୍ଷା କରି ସେ ଅନୁସାରେ କାର୍ଯ୍ୟ କରିବା ।

ସ୍ତ୍ରୀ—ଅନ୍ୟମାନଙ୍କଠାରୁ କଣ ଶିଖିବ ମ ? ମଦ ମାଉଁସ ଖାଇବା ?

ସ୍ୱାମୀ—ହୁଁ, ପରା କହିଲି ଯାହା ଭଲ ଗୁଣ ଥିବ ଶିଖିବା, ମନ୍ଦ କଥା ପ୍ରତି ଦୃଷ୍ଟି ଦେବା ନାହିଁ ? ମଦ ମାଉଁସ ଖାଇବାଟା ଆମ ଶାସ୍ତ୍ରରେ ମନା; ଆମେ ଖାଇଲେ ପାପ ହେବ; ଆମ ଦେଶ ଜଳବାୟୁରେ ଆମ ଦେହରେ ଚଳିବ ନାହିଁ; ନାନା ରୋଗ ହେବ, ସେ କଥା ଭାବି ଶାସ୍ତ୍ର ଆମ ଇତିହାସ ସେଗୁଡ଼ାକୁ ଅଖାଦ୍ୟ ବୋଲି କହୁଛି ।

ସ୍ତ୍ରୀ—ଆଜିକାଲି ବାବୁମାନେ ତ ସେ କଥା ନ ହେଲେ ପୃଥିବୀ ପ୍ରଳୟ କରିବେ ?

ସ୍ୱାମୀ—ଆହେ, ବୁଝିଲ ନାହିଁ କି ? ବାବୁମାନେ ପରା ଆମର ସାହେବ ହୋଇ ଶିଖୁଛନ୍ତି ; ଦେଖିଲେ ସାହେବ ମଦ ମାଉଁସ ଖାଉଛନ୍ତି, ତାଙ୍କ ସାଥିରେ ମିଶିବା ପାଇଁ ତାଙ୍କର ପରି ଖାଉଛନ୍ତି, ତାଙ୍କର ପରି ପିନ୍ଧୁଛନ୍ତି । କିନ୍ତୁ ବୁଝିଲ, କାଉ କାଉ,

କୋଇଲି କୋଇଲି । କଳା ବୋଲି ହେଲେ କଣ ବଗ କାଉ ହେବ ? ସାହେବ କଣ ସ୍ତ୍ରୀଙ୍କୁ ମିଶାଉଛନ୍ତି ? ସାହେବଙ୍କ ଭଲ ଗୁଣଯାକ ଆଉ ବାବୁ ଶିଖି ପାରୁ ନାହାନ୍ତି । ସେମାନଙ୍କ ପରି ବ୍ୟବସାୟୀ, ସେମାନଙ୍କ ପରି ପରିଶ୍ରମୀ, ସେମାନଙ୍କ ପରି ପାଠୁଆ ହେବାକୁ ଆଉ ଚେଷ୍ଟା ନାହିଁ । ଏ ସବୁ କଷ୍ଟ । ମଦ ମାଂସ ଖାଇବା ଲାଗି ପରିଶ୍ରମ ଆବଶ୍ୟକ ନାହିଁ, ସୁତରାଂ ତରିବାହା ସହଜ ।

ଏବେ ଦେଖିବ ଟି, କେତେ ବାବୁ ହାତରେ ଖଡ଼ି ନାଇଲା ପରି ଗୋଟାଏ ଚମ ଦଉଡ଼ିରେ ଘଣ୍ଟା ବାନ୍ଧିଛନ୍ତି । ସାହେବମାନେ ବାନ୍ଧଥାନ୍ତି ସତ, କାରଣ ସେ ମିନିଟିଏ ସମୟ ନଷ୍ଟ କରନ୍ତି ନାହିଁ । ଯେଉଁ ମିନିଟରେ ଯାହା କରିବାକୁ ତାହା ନିଶ୍ଚୟ କରନ୍ତି, ସେମାନେ ସମୟର ମୂଲ୍ୟ ବୁଝନ୍ତି । କିନ୍ତୁ ଆମ ବାବୁଙ୍କ ହାତରେ ଘଣ୍ଟା; ମାତ୍ର ତାସ, ପଶା, ଗଞ୍ଜପା, ଗାଲଗଳ୍ପ, ପରନିନ୍ଦା, ନାନାପ୍ରକାର କୁଚର୍ଚ୍ଚା, ଅଥବା ଭ୍ରମଣ, ଖୁସିଗଳ୍ପ କରି ସମୟ କଟାନ୍ତି । ପାଠ ପଢ଼ିବା ପୋଥି ଲେଖିବା କଥା ଶୁଣିଲେ କହନ୍ତି—ଓଃ, ମତେ କଣି ଜମା ଫୁରୁସତ ହେଉଛି ? ସାହେବଙ୍କଠାରୁ କଣ ଆମେ ଏହି କଥା ଶିଖି ସାହେବ ହେବା ?

ସ୍ତ୍ରୀ—ଆମ ଶାସ୍ତ୍ରରେ କଣ ଭଲ କଥା ନାହିଁ ?

ସ୍ୱାମୀ—ଅଛି, ନ ଥାନ୍ତା କାହିଁକି ? ପଢ଼ୁଛନ୍ତି କିଏ ? ପଢ଼ିଲେ ମଧ୍ୟ ପାଠ ଅନୁସାରେ କାମ କରୁଛି କିଏ ? ଅନ୍ୟଠାରୁ ଭଲ କଥା ଶିଖିବାରେ କିଛି ଦୋଷ ନାହିଁ । ଅବଧୂତ ପରା ପଶୁପକ୍ଷୀ ପ୍ରଭୃତିଙ୍କୁ ଗୁରୁ କରି ସେମାନଙ୍କ ଭଲ ଗୁଣ ଶିଖିଥିଲେ ? ଅବଧୂତଙ୍କ ଚବିଶ ଗୁରୁ କଥା ମନେ ଅଛି ଟିକି ?

ସ୍ତ୍ରୀ—ହଁ, ହଁ, ମନେ ଅଛି ।

ସ୍ୱାମୀ—ଅବଧୂତ ଯେମାନଙ୍କ ଭଲ ଗୁଣ ଶିଖିଥିଲେ, କିନ୍ତୁ ପଶୁ ପକ୍ଷୀଙ୍କ ଖାଦ୍ୟ ତ ଖାଇ ନ ଥିଲେ । ସେହିପରି ଅନ୍ୟ ଦେଶର ଇତିହାସ ପାଠ କରି ମହୁମାଛି ଯେପରି ସବୁ ଫୁଲରୁ ମହୁ ଆଣି ଏକାଠି ଠୁଳ କରେ, ଆମକୁ ସେହିପରି କରିବାକୁ ହେବ ।

ସ୍ତ୍ରୀ—ହଁ, ତା ନୁହେଁ କଣ ? ଆଚ୍ଛା, ହଇ ହେ ! ପୁଅ ଗୋଟାଏ 'ଭୂଗୋଳ' ବୋଲି କି ବହି ପଢ଼ୁଥିଲା; ସେଥିରେ କଣ ଅଛି ମ ?

ସ୍ୱାମୀ—ଇତିହାସ ପରି ଭୂଗୋଳ ଗୋଟିଏ ଭଲ ବହି । କେଉଁ ଦେଶରେ କିପରି ନଈ ଅଛି, ପାହାଡ଼ ଅଛି, କେଉଁ ଦେଶରେ କି ଶସ୍ୟ ଜନ୍ମେ, କେଉଁ ଦେଶରେ କି କି ପଶୁ ପକ୍ଷୀ ଥାନ୍ତି, ଇତ୍ୟାଦି ବିଷୟ ଭୂଗୋଳ ପଢ଼ିଲେ ଜଣାଯାଏ । ଭୂଗୋଳ ପଢ଼ିଲେ କେଉଁ ଜିନିଷ ଆଣିବା ପାଇଁ କେଉଁ ରାଜ୍ୟକୁ ଯିବାକୁ ହେବ, କେଉଁ ବାଟରେ ଗଲେ ସହଜ ହେବ, ଇତ୍ୟାଦି ବିଷୟ ଘରେ ବସି ଜାଣିପାରିବ । ଏଥିଲାଗି ଭୂଗୋଳ ପଢ଼ିବାକୁ ହୁଏ ।

ସ୍ତ୍ରୀ—ଆମେ ମାଇପି ଜାତି ଏତେ କଥା କେଉଁଠୁ ଜାଣିବୁ ? ପୁଅ କେତେ ପ୍ରକାର ବହି ପଢ଼ୁଛି, ମୁଁ ସେଗୁଡ଼ାକ ଦେଖି କିଛି ବୁଝି ପାରେ ନାହିଁ । ଆଚ୍ଛା, ସେ ଦିନ ଆଉ ଖଣ୍ଡେ ବହି ଦେଖିଥିଲି, 'ବିଜ୍ଞାନ'—ସେ କି ବହି ମ ?

ସ୍ୱାମୀ—ବିଜ୍ଞାନ ଅର୍ଥ ବିଶେଷ ଜ୍ଞାନ, ଅର୍ଥାତ୍ କୌଣସି ଏକ ବିଷୟରେ ବହୁତ କଥା ଯେଉଁ ପୋଥିରୁ ଜଣା ପଡ଼େ, ତାକୁ ବିଜ୍ଞାନ କହନ୍ତି । ବିଜ୍ଞାନରେ ସବୁ କଥା ଅଛି । ରେଳ କିପରି ଚାଲୁଛି, କପଡ଼ା ତିଆରି ହୋଉଛି, ଘଣ୍ଟା କିପରି ଚାଲୁଛି, କପଡ଼ା ତିଆରି ହୋଉଛି, ତାରଡାକରେ କିପରି ଖବର ଯାଉଛି, ଯନ୍ତ୍ର କିପରି

ଗୀତ ଗାଉଛନ୍ତି, ଆକାଶରେ ଗ୍ରହ ତାରାମାନଙ୍କର କିପରି ଗତି ହେଉଛି, ସେମାନଙ୍କର ଗତି ହେତୁ କିଣ ଫଳ ହେଉଛି, କି ଔଷଧ ଖାଇଲେ କି ରୋଗ ଭଲ ହୁଏ, କି କାରଣରୁ କି ରୋଗ ହୁଏ, କିପରି ଚଳିଲେ ଦେହ ସୁସ୍ଥ ରହିବ, ରୋଗ ହେବ ନାହିଁ, ଆକାଶରେ ଉଡ଼ାଜାହାଜ କିପରି ଯାଉଛି, ପାଣିରେ ଜାହାଜ କିପରି ଚଳୁଛି କଳ କାରଖାନାମାନ କିପରି ଚାଲୁଛି, ଇତ୍ୟାଦି ବିଷୟ ବିଜ୍ଞାନ ପଢ଼ିଲେ ଜାଣି ପାରିବ । ଏପରି କଥା ନାହିଁ, ଯାହା ବିଜ୍ଞାନରେ ନ ମିଳିବ । ପ୍ରତ୍ୟେକ ବିଷୟ ସଂବନ୍ଧରେ ବିଜ୍ଞାନ ଦେଖାଯାଏ; ଯେପରି ଜ୍ୟୋତିର୍ବିଜ୍ଞାନ, ଅର୍ଥାତ୍ ଜ୍ୟୋତିଷ ବିଷୟ ଯେଉଁଥିରୁ ଜଣାଯାଏ, ଯୁଦ୍ଧ ବିଜ୍ଞାନ, ଅଙ୍କ ବିଜ୍ଞାନ, ରନ୍ଧନ ବିଜ୍ଞାନ, ଅପୂର୍ବ ବିଜ୍ଞାନ ଇତ୍ୟାଦି । ବିଦ୍ୟାର ସୀମା ନାହିଁ କି ଜ୍ଞାନର ସୀମା ନାହିଁ ।

ସ୍ତ୍ରୀ—ଏତେ ଏତେ କଥା ପାଠରେ ଅଛି ? ଆମେ ମାଇପେ ତ ମୂର୍ଖ ହେଲୁ, ଜାଣିବୁ କିପରି ! ଆମର ଏ ଗୁଡ଼ାକ ଜାଣି କଣ ହେବ । ମରଦ ସିନା ପଢ଼ିଲେ ହେବ ।

ସ୍ବାମୀ—ଜ୍ଞାନ ଲାଗି ସ୍ତ୍ରୀ ପୁରୁଷ ପ୍ରଭେଦ ନାହିଁ । ଯେ ପଢ଼ି ପାରିଲା ହେଲା, ପୂର୍ବ କାଳରେ ପଢ଼ୁଥିଲେ କିପରି ?

ସ୍ତ୍ରୀ—ମାଇପେ କେଉଁ କାଳେ ଏ ପାଠ ପଢ଼ୁଥିଲେ ମ ! ତମଠାରୁ ସବୁ ଅପୂର୍ବାନ୍ତର କଥା ଶୁଣିମ ।

ସ୍ବାମୀ—ନା, ନା, ଏ କଥା ତ ମିଛ ନୁହେଁ । ଶାସ୍ତ୍ରରେ ଲେଖାଅଛି— ସରସ୍ବତୀ ତ ବିଦ୍ୟା ମାଲିକ, ବିଦ୍ୟାଭଣ୍ଡାର ଗୁର ପରା ତାଙ୍କ ହାତରେ । ସେ କଣ ମାଇକିନିଆ ନା ଅଣ୍ଡିରା ? ଲୀଳାବତୀ ଖନା ନାମ ଶୁଣିଛ ?

ସ୍ତ୍ରୀ—ହଁ, ହଁ, ଗୁରୁଜନଙ୍କଠାରେ ପଢ଼ିଲା ବେଳେ ଅବସ୍ଥାନେ କହୁଥିଲେ ।

ସ୍ୱାମୀ—ସେ ଲୀଳାବତୀ ଜଣେ ସ୍ତ୍ରୀଲୋକ ଥିଲେ । ଅଙ୍କ ବିଦ୍ୟାରେ ଭାରି ପଣ୍ଡିତା ଥିଲେ । ଖନା ବୋଲି ଜଣେ ସ୍ତ୍ରୀଲୋକ ଥିଲେ ଯେ ସେ ଜ୍ୟୋତିଷ ବିଦ୍ୟାରେ ପଣ୍ଡିତା ଥିଲେ । ଏପରି କେତେ ପଣ୍ଡିତା ରମଣୀ ଏ ଭାରତବର୍ଷରେ ଥିଲେ, ଆଜି ସିନା କେହି ଦେଖାଯାଉ ନାହିଁ ।

ସ୍ତ୍ରୀ—ମାଇପେ ଘର ଜଞ୍ଜାଳ କରିବେ ନା ବହି ଧେଇ ବସି ପାଠ ପଢ଼ିବେ ?

ସ୍ୱାମୀ—ଘର ଜଞ୍ଜାଳ କରିବେ, ମାତ୍ର ଘର ଜଞ୍ଜାଳ ଅଚ୍ଛା କରି ଚଳାଇବା ଲାଗି ବହୁତ କଥା ଜାଣିବା ଆବଶ୍ୟକ । ଅନେକ କଥା ନ ଜାଣିଲେ ସୁଗୃହିଣୀ, ସୁମାତା, ସୁକନ୍ୟା ହୋଇ ପାରିବା ଅସମ୍ଭବ । ଘରକରଣା କେତେବେଳେ ସୁଖ ? ଆପଣା ପରିବାର ମଧ୍ୟରେ ସମସ୍ତେ ହୃଷ୍ଟପୁଷ୍ଟ, ବଳିଷ୍ଠ, ପଣ୍ଡିତ; ଖାଇବା ପିଇବା ଚିନ୍ତା ନାହିଁ, ସମସ୍ତେ ସୁସ୍ଥ, ନିରୋଗୀ, ଖାଇବା ପିଇ-ବାକୁ ଉତ୍ତମ ଖାଦ୍ୟ ମିଳୁଛି, ପିଲାଛୁଆ ପାଞ୍ଚଟା ଅଛନ୍ତି, ଦେବ-ସେବା ଅତିଥି-ସତ୍କାର ହେଉଛି, ଏ ସମସ୍ତ କଥା ଯେଉଁ ପରିବାରରେ ଦେଖାଯାଏ, ସେ ପରିବାର ପ୍ରକୃତ ସୁଖୀ । ମାତ୍ର ଗୃହିଣୀ ଭଲ ହେଲେ ଏ ସବୁ ଅକ୍ଳେଶରେ ମିଳି ପାରେ । ସୁତରାଂ ଗୃହିଣୀର ସବୁ ବିଷୟରେ ଠିକ୍ ଜ୍ଞାନ ଥିବା ଆବଶ୍ୟକ ।

ସ୍ତ୍ରୀ—ହଁ, ଯାହା କହିଲ ସତ, ମାତ୍ର ସେପରି ମୂଳରୁ ଝିଅମାନଙ୍କୁ ଗଢ଼ିବା ଆବଶ୍ୟକ ।

ସ୍ୱାମୀ—ସେ କଥା ତ ମା ଉପରେ ବିଶେଷ ନିର୍ଭର କରେ ।

ସ୍ତ୍ରୀ—ମା ଜାଣିଥିଲେ ସିନା ଶିଖାଇବ, ନ ଜାଣିଥିଲେ କଣ କରିବ ? ଅଚ୍ଛା, ସ୍ୱାସ୍ଥ୍ୟରକ୍ଷା ବିଷୟରେ ମତେ ଟିକିଏ କଣ କହି

ଦଅନ୍ତୁ ! ପିଲାପିଲି ନେଇ ଘର କରୁଥାଉଁ, ଜାଣିଥିଲେ ହେଲେ ଟିକିଏ ସାବଧାନରେ ଚଳିବା ।

ସ୍ୱାମୀ—ଦେଖ, ପରିଚ୍ଛନ୍ନତା ସ୍ୱାସ୍ଥ୍ୟର ମୂଳ ଚାବି । ଅପରିଷ୍କାର ଅସନା ଜାଗାରେ ରହିବା, ଅପରିଷ୍କାର ଖାଦ୍ୟ ଖାଇବା, ଅପରିଷ୍କାର ଜଳ ପିଇବା, ଅପରିଷ୍କାର ଲୁଗା ପିନ୍ଧିବାଦ୍ୱାରା ସ୍ୱାସ୍ଥ୍ୟ ହାନି ହୁଏ, ନାନା ରୋଗ ଜନ୍ମେ । ସୁତରାଂ ସବୁବେଳେ ପରିଷ୍କାର ପରିଚ୍ଛନ୍ନତା ପ୍ରତି ଦୃଷ୍ଟି ଦେବ । ଘରଦ୍ୱାର ଗୁଡ଼ିକ ପ୍ରତିଦିନ ଓଳିଆ ପୋଛିଆ ହେବ, କେଉଁଠି ଟିକିଏ ଅଳିଆ ନ ରହିବ; କେଉଁଠି ପାଣି ଜମି ନ ରହିବ, କୁଆ ମୂଳ ସନ୍ତସନ୍ତିଆ ନ ହେବ, ପ୍ରତିଦିନ ଦୁଆର ଘରେ ଗୋବରପାଣି ପକାଇବ, ଗୋମୂତ୍ରଦ୍ୱାରା ଲେପନ କରିବ; କୁଡ଼ିଆ ଘର ଖଣ୍ଡେ ହେଉ ପଛକେ ଆମ୍ଭମାନଙ୍କ ବସିବା ସ୍ଥାନଟିକୁ ସବୁବେଳେ ପରିଷ୍କାର ରଖିବ । ପିନ୍ଧିବା ଲୁଗା ମଧ୍ୟ ସେହିପରି ଚିରା ଲୁଗା ଖଣ୍ଡେ ହେଉ ପଛକେ ପରିଷ୍କାର ଥିଲେ ହେଲା । ଅପରିଷ୍କାର ଲୁଗା ପିନ୍ଧିଲେ କାଛୁ କୁଣ୍ଡିଆ ପ୍ରଭୃତି ନାନା ରୋଗ ଜନ୍ମେ ।

ପରିଷ୍କାର ଜଳ ପିଇବା ଗୋଟିଏ ପ୍ରଧାନ କଥା । ଜଳରେ ପୋକ ଜୋକ ନ ଥିବେ, କୁହାଗୁଣ୍ଡି ପଡ଼ି ନ ଥିବ, ଜଳପାତ୍ର ମଇଳା ଜାଗାରେ ନ ଥିବ, ମାଠିଆ ପ୍ରଭୃତିର ଭିତର ପ୍ରତିଦିନ ଧୁଆ ହେବ ଏଗୁଡ଼ିକ ପ୍ରତି ବିଶେଷ ଦୃଷ୍ଟି ଦେବ । ପିଇବା ପାଣି ଭଲ ଥିଲେ କୌଣସି ରୋଗ ହୁଏ ନାହିଁ । ପାଣିଦୋଷରୁ ହଇଜା ହୁଏ ଜାଣ ? ହଇଜା ହେଲାବେଳେ ପାଣି ପ୍ରତି ବଡ଼ ନଜର ଦେବ । ପାଣି ଅପରିଷ୍କାର ବୋଲି ମନରେ ସନ୍ଦେହ ନେଲେ ପାଣିକି ପରିଷ୍କାର କରିନେବ । ପାଣିକି ସିଝାଇ ଥଣ୍ଡା କରିଦେଲେ ନିର୍ଦ୍ଦୋଷ ହୋଇଥାଏ, ତାହିରେ କିମ୍ବା

ବା ଫିଙ୍ଗିକରି ପକାଇ ଦେଲେ ପରିଷ୍କାର ହୋଇଯାଏ, ଏଣୁ
କନାରେ ପିଇବା ପୂର୍ବରୁ ପାଣି ଛାଣିବା ଅବଶ୍ୟକ । ଭଗବତ
ପଣ୍ଡା କହିଛନ୍ତି "ଜଳ ପବନ ଲାଗି ଦେହ," ଅର୍ଥାତ୍ ଜଳ
ପବନ ଏ ଦେହକୁ ରଖିଛି; ଜଳ ବା ପବନ ଅଡ଼ ହୋଇ
ଗଲେ ମନୁଷ୍ୟ ମରିଯିବ ।

ପରିଷ୍କାର ପବନ ଓ ପାଣି ଏ ଦେହ ଯନ୍ତ୍ର ଭିତରକୁ ଯିବା
ଆସିବା କରୁଛି ବୋଲି ମନୁଷ୍ୟ ସୁସ୍ଥରେ ଅଛି । ଏମାନେ
ଅପରିଷ୍କାର ହେଲେ ନାନା ରୋଗ ହେବ । ପାଣିକି ପରିଷ୍କାର
କରିବା କଥା କହିଛି । ପବନ ମଧ୍ୟ ନିର୍ମଳ ହେବା ଆବଶ୍ୟକ ।
ଅନିର୍ମଳ ପଦାର୍ଥ ଉପରେ ଦେଇ ପବନ ବହି ଆସିଲେ
ଅପରିଷ୍କୃତ ହୋଇଥାଏ; ସୁତରାଂ ଘର ଚାରିପାଖେ ଯେପରି
କିଛି ଅନିର୍ମଳ ଜିନିଷ ନ ରହେ, ଖତଗଦା, ଅଳିଆଗଦା,
ପଚାପାଣି ଖାଲ, ଗୋବରଖାତ ଯେପରି ନ ରହେ । ଦୁଆରେ
ତୁଳସୀ ଗଛ ଥିଲେ ବାୟୁ ପରିଷ୍କୃତ ହୁଏ । ଏଥିଲାଗି ପୂର୍ବରୁ
କଥା ଅଛି, ଯେଉଁଠି ତୁଳସୀ ଗଛ ଥାଏ ସେଠାକୁ ଯମ ଯାଏ
ନାହିଁ । ତୁଳସୀ ଗଛର ଅପାର ଗୁଣ, ପ୍ରତିଦିନ ତୁଳସୀ ପତ୍ର
ଖାଇଲେ କଫ, ଶ୍ୱାସ, କାଶ ନଷ୍ଟ ହୁଏ । ଏଥିଲାଗି ପ୍ରତିଦିନ
ଦେବତା ପୂଜା ତୁଳସୀ ପତ୍ର ପାଦୁକ ପାଇବାର ବିଧି ଥିଲା ।
ସମସ୍ତ ସମୟରେ ଘରେ ଝୁଣା ଧୂଆଁ ଦେଲେ ଘରୁ ଦୂଷିତ
ବାୟୁ ଚାଲିଯାଏ ଏବଂ ନିର୍ମଳ ବାୟୁ ଆସେ । ଏ ଦୁଇ କଥା
ପ୍ରତି ଦୃଷ୍ଟି ଦେବା ନିତାନ୍ତ ଅବଶ୍ୟକ । ହୋମ ଧୂଆଁ ଘରେ
ବାଜିଲେ ବାୟୁ ନିର୍ମଳ ହୋଇଯାଏ । ତୃତୀୟ କଥା ଖାଦ୍ୟ
ଓ ରନ୍ଧନ ବନ୍ଧନ, ଏ କଥା ପରେ କହିବି ।

ସ୍ତ୍ରୀ—ତମେ ଯେଉଁ ଗୁଡ଼ିକରମାନଙ୍କୁ ରଖିଛ, ସେ ତ ସବୁ ଘର
ପକାଇବେ ?

ସ୍ୱାମୀ—ଚାକର ଉପରେ ସମସ୍ତ ଭାର ଦେଇ ଚଳିଲେ ହେବ ନାହିଁ । ଦରକାର ହେଲେ ଏଗୁଡ଼ିକ ନିଜେ କରିବ । ମୋ ପ୍ରାଣ ମତେ ବଡ଼ ବା ମୋ ପିଲାକବିଲାଙ୍କୁ ବଡ଼ । ଏମାନେ ମୋ ଜୀବନ ରକ୍ଷାପାଇଁ ଯେପରି ବ୍ୟାକୁଳ, ଚାକରର ପ୍ରାଣ ତ ସେପରି ବ୍ୟାକୁଳ ହୁଏ ନାହିଁ । ଚାକରଠାରୁ ଯାହା କରାଇ ନେଇ ପାରିବ ତାହା ହେବ, ମାତ୍ର ଚାକର ଯେ ସବୁ କଥା ମନରୁ କାଢ଼ି କରିବ ସେପରି ଆଶା କରିବା ବୃଥା । ଚାକର ଯେବେ ନ କଲା, ତେବେ କଣ କହିବା—ପ୍ରାଣ ଗଲେ ଯାଉ ? ଚାକର ଯେବେ ନ କଲା ତେବେ ନ ହେଲା, ଏହା କହି କଣ ତୁନି ହୋଇ ବସିବ ? ଆପଣା କଥାକୁ ଆପେ ସାବଧାନ ହେବା ଆବଶ୍ୟକ । ଆଜି ଆମର ଅଛି ବୋଲି ପାଞ୍ଚଟା ଚାକର ଅଛନ୍ତି, ଆମକୁ ନ ମିଳିଲା ବେଳେ ତ ଆମେ ଆପେ କରିବାକୁ ହେବ । ଖାଇବା କଥାଟି ପ୍ରତି ନିଜେ ଦୃଷ୍ଟି ଦେବା ଆବଶ୍ୟକ । ଅନ୍ନ ତ ପ୍ରାଣ, ତା ଠାରୁ ବଳି ମୂଲ୍ୟବାନ ପଦାର୍ଥ ଆଉ କଣ ଅଛି ? ଖାଇଲେ ଏ ପ୍ରାଣ ରହିଲା ନ ଖାଇଲେ ଉଡ଼ିଯିବ । ଯାହା ଉପରେ ଆମର ଜୀବନ ନିର୍ଭର କରେ, ସେ ପଦାର୍ଥ ପ୍ରତି ଆମର କେତେ ଦୂର ସାବଧାନ ହେବା ଆବଶ୍ୟକ ବୁଝିପାରୁଛ ଟିକି ? ଶାସ୍ତ୍ର କହୁଛି "ପଥ୍ୟାଶୀନଃ" ଅର୍ଥାତ୍ ଯେଉଁ ଲୋକେ ପଥ୍ୟରେ ରହନ୍ତି ସେମାନେ ଦୀର୍ଘଜୀବୀ ହୁଅନ୍ତି ।

ସ୍ତ୍ରୀ—ରୋଗୀ ପଥ୍ୟ ପାଇଁଶରେ ରହନ୍ତି ସିନା, ଆଉ ସମସ୍ତେ କଣ ସବୁବେଳେ ପଥ୍ୟ ଖାଅନ୍ତି ?

ସ୍ୱାମୀ—ରୋଗୀ ଯାହା ଖାଏ ତାହା କଣ କେବଳ ପଥ୍ୟ ? ତାହା ନୁହେଁ । ଯେତେବେଳେ ଯେଉଁ ଖାଦ୍ୟ ଜୀର୍ଣ୍ଣ ହେବ ତାହା ସେତେବେଳର ପଥ୍ୟ । ଯେ ଯାହା ଖାଏ ତାର ତା ପଥ୍ୟ ।

ଆମମାନଙ୍କ ଖାଦ୍ୟର ଧର୍ମ୍ମ ସଙ୍ଗେ ସମ୍ପର୍କ ଅଛି । ତୁମେ ଜାଣ ପ୍ରତିଦିନ ଯାହା ରନ୍ଧା ହେବ ଆଗେ ଇଷ୍ଟଦେବତାଙ୍କୁ ନୈବେଦ୍ୟ କରିବ, ପରେ ଅତିଥିଙ୍କୁ ଦେବ, ସବଶେଷରେ ନିଜେ ଭୋଜନ କରିବ । ଆଉ ଗୋଟିଏ କଥା ଶୁଣ, ନିର୍ମ୍ମଳ ଧର୍ମ୍ମଭାବ ସହିତ ମନର ବଡ଼ ସମ୍ପର୍କ ଅଛି, ଜାଣ ?

ସ୍ତ୍ରୀ—କପରି ?

ସ୍ୱାମୀ—ଆଚ୍ଛା କହିଲ ଦେଖି, ମଦ ଖାଇଲେ ବା ଅଫିମ ଗଞ୍ଜେଇ ଖାଇଲେ କଣ ହୁଏ ?

ସ୍ତ୍ରୀ—ଚହନ୍ତି ନିଶା ହୁଏ ।

ସ୍ୱାମୀ—ତେତେବେଳେ ମନଟା ଆଉ ପ୍ରକାରେ ହୋଇ ଯାଏ ନାହିଁ କି ?

ସ୍ତ୍ରୀ—ହିଁ, ହୁଏ ।

ସ୍ୱାମୀ—ତେବେ ମଦ ଖାଇବା ସହିତ ମନର ସମ୍ପର୍କ ଅଛି କି ନା ?

ସ୍ତ୍ରୀ—ଅଛି ।

ସ୍ୱାମୀ—ତେବେ ମଦ ପରି ଅନ୍ୟାନ୍ୟ ସବୁ ଖାଦ୍ୟ ସଙ୍ଗେ ମନର ସମ୍ପର୍କ ଅଛି । ଯେପରି ଖାଦ୍ୟ ଖାଇଲେ ମନ ନିର୍ମ୍ମଳ ରହିବ, ନିଶ୍ଚଳ ରହିବ, ସେହିପରି ଖାଦ୍ୟ ଖାଇବା ଲାଗି ଆମ ଋଷିମାନେ ଶାସ୍ତ୍ର ଲେଖି ଯାଇଛନ୍ତି । ଶାସ୍ତ୍ର ଅନୁସାରେ ଖାଦ୍ୟ ଖାଇ ଚଳିଲେ ଲୋକ ଧାର୍ମିକ ହୁଏ, ସବଳ ହୁଏ ଏବଂ ସୁସ୍ଥ ଥାଏ ।

ସ୍ତ୍ରୀ—କିଏ ଅଛିତାଲି ପୋଥି ପଢାଇ ଖାଦ୍ୟ ଖାଉଛି ? ଯାହା ଯେତେବେଳେ ମନ ହେଉଛି ଖାଉଛି, ଏତେ ଶାସ୍ତ୍ରାଦାଢ଼ରେ ବାଟ ଚାଲିବ କପରି ?

ସ୍ୱାମୀ—ତାହା ଚାଲୁ ନାହାନ୍ତି ସତ, କିନ୍ତୁ ତୁମେ ଦେଖୁ ନାହଁ ଲୋକମାନେ ଅଳ୍ପାୟୁ ହୋଇ ଯାଉଛନ୍ତି; ଆଉ ଗୋଟିଏ ସୁସ୍ଥକାୟ ସବଳ ଲୋକ ଦେଖା ଯାଉ ନାହାନ୍ତି ।

ସ୍ତ୍ରୀ—ଏତେ କଥା ଆମେ କିପରି ବୁଝିବୁ ?

ସ୍ୱାମୀ—ନ ବୁଝିଲେ ଚଳିବ କିପରି ? ମୋଟାମୋଟି ଟିକିଏ ଜାଣିଲେ ହେଲା । ଖାଦ୍ୟ ଭେଦରେ ମନୁଷ୍ୟର ଗୁଣ ଭେଦ ହୁଏ, ଅର୍ଥାତ୍ ଯେପରି ଖାଦ୍ୟ ଖାଇବ ପ୍ରକୃତି ସେହିପରି ହୋଇଯିବ । ଗୀତାରେ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏ ସମସ୍ତ କଥା ବୁଝାଇଛନ୍ତି । ଆହାର ତିନି ପ୍ରକାର, ପ୍ରକୃତି ମଧ୍ୟ ତିନି ପ୍ରକାର, ଯଥା:—ସତ୍ତ୍ୱ, ରଜ, ତମ ।

ସ୍ତ୍ରୀ—ଏ କଥା ଜଣା ପଡ଼ିବ କିପରି ?

ସ୍ୱାମୀ—ଜାଣିବାର କେତେ ଗୋଟି ଲକ୍ଷଣ ଅଛି, କହୁଛି ଶୁଣ । ଯେଉଁ ମନୁଷ୍ୟଙ୍କୁ ଦେଖିବ ଯେ ତାର ଚିତ୍ତ ନିର୍ମଳ, ଧୀର, ଶାନ୍ତ, ଧର୍ମଶୀଳ, ସତ୍ୟବାଦୀ, ପରୋପକାରୀ,ପରସ୍ପର ପରଛନ୍ଦ ଇତ୍ୟାଦି ସେ ଲୋକ ସତ୍ତ୍ୱଗୁଣୀ ବୋଲି ଜାଣିବ ।

ଯେଉଁ ଲୋକର ଭୋଗବିଳାସ ଇଚ୍ଛା ବେଶୀ, ମଜଲିସ ମଜଲିଶରେ ଧନ କଟାଏ, ବାରପ୍ରକାର ସୁଖ ଭୋଗ କରି ସମୟ ନିଏ, ସେ ରଜୋଗୁଣୀ । ଏ ପ୍ରକାର ଲୋକେ ନାନା ଆଶାରେ କାମ କରନ୍ତି, ଏମାନଙ୍କ ମନରେ ଶାନ୍ତି ନ ଥାଏ, ଏମାନଙ୍କ ଲୋଭର ସୀମା ନାହିଁ ।

ଯେଉଁ ଲୋକ ଅଳସୁଆ, ଯେ ଆପଣା ସୁଖ ଲାଗି ପରକୁ ହାଣିଦେବାକୁ ପଛାଏ ନାହିଁ, ମିଥ୍ୟା କହେ, ଅଜ୍ଞାନର କାର୍ଯ୍ୟ କରେ, ସେ ତମୋଗୁଣୀ । ସବୁ ମଣିଷଠାରେ ଊଣା ଅଧିକରେ ଏ ତିନି ଗୁଣଯାକ ଥାନ୍ତି; ମାତ୍ର କାହାଠାରେ କେଉଁ ଗୁଣ ଅଧିକ, କେଉଁ ଗୁଣ ବା ଊଣା । ଯାହାଠାରେ ଯେଉଁ ଗୁଣ ବେଶୀ, ତାର ପ୍ରକୃତି ସେହିପରି ହୁଏ । ଖାଦ୍ୟ ଦ୍ୱାରା ମଧ୍ୟ ଗୁଣମାନେ ଊଣା ଅଧିକ ହୁଅନ୍ତି । କେଉଁ ଖାଦ୍ୟ ଖାଇଲେ

କେଉଁ ଗୁଣ ବଢ଼େ, ଋଷିମାନେ ସେ କଥା ଠିକଣା କରି ଶାସ୍ତ୍ରରେ ଲେଖି ଯାଇଅଛନ୍ତି । ଜାଣ, ମନୁଷ୍ୟର ଶତ୍ରୁ କିଏ ?

ସ୍ତ୍ରୀ—ନା, ଯେ ଯାହାର ଅନିଷ୍ଟ କରେ ସେ ପରା ତାର ଶତ୍ରୁ ।

ସ୍ୱାମୀ—ହଁ, ଆପଣା ଦେହରେ ଆପଣାର ଛଅଟି ଶତ୍ରୁ ଅଛନ୍ତି । ୧ କ୍ରୋଧ, କହନ୍ତି ପରା ରାଗ ପରମ ଚଣ୍ଡାଳ । କ୍ରୋଧ ହେଲେ ମନୁଷ୍ୟର ଜ୍ଞାନ ରହେ ନାହିଁ । ସେ କଣ କାର୍ଯ୍ୟ କରୁଛି, ତାର ଫଳ କଣ ହେବ; ଏ କଥା ବୁଝିପାରେ ନାହିଁ, ସୁତରାଂ ଏ ଗୋଟିଏ ଅନେକ ଶତ୍ରୁ । ୨ ଲୋଭ, ୩ ମୋହ, ୪ ମଦ, ୫ ମାତ୍ସର୍ଯ୍ୟ, ୬ କାମ, ଏ କେହି କାହାରିଠାରୁ ଊଣା ନୁହନ୍ତି । ଏମାନେ ବାଗୁରିଲେ ମନୁଷ୍ୟକୁ ନେଇ ମୁହୂର୍ତ୍ତିକେ ୬୦ ହାତ ଖାଲରେ ପକାଇ ଦେବେ । ଋଷିମାନେ କହନ୍ତି, ଏ ଛଅଟି ଯାକ ଦୁଷ୍ଟ ଘୋଡ଼ା । ମନ ଯେବେ ଏ ଛଅ ଘୋଡ଼ା ଗାଡ଼ିରେ ଚଢ଼ି ଗଲେ ତେବେ ଆଉ ରକ୍ଷା ନାହିଁ । ଏ ଘୋଡ଼ାମାନଙ୍କୁ ବାଟଡୋର ଦେଇ ଆୟତ୍ତ କରି ପାରିଲେ ମନୁଷ୍ୟ ଭଲ ବାଟରେ ଗଲି ପାରିବ, ନୋହିଲେ କଣ୍ଟା ବଣରେ ପଡ଼ି ହାଡ଼ ଗୋଡ଼ ଭୁଷୁଡ଼ିଯିବ ।

ଖାଦ୍ୟ ସହିତ ଏ ଶତ୍ରୁମାନଙ୍କର ବିଶେଷ ସମ୍ପର୍କ । ଯେପରି ଦାନା ଖାଇବ ଘୋଡ଼ା ସେହିପରି ମାତିବ । କେଉଁ ଖାଦ୍ୟ ଖାଇଲେ ଘୋଡ଼ା ମତୁଆଳ ହେବ, କେଉଁ ଖାଦ୍ୟ ଖାଇଲେ ଘୋଡ଼ା ଶାନ୍ତ ହେବ, ସେ କଥା ମଧ୍ୟ ଋଷିମାନେ ଠିକଣା କରି ଯାଇଛନ୍ତି । ଏ ୬ ଘୋଡ଼ାଯାକ ଶାନ୍ତ ନ ହେଲେ ଲୋକ ଧାର୍ମିକ ହୋଇ ପାରିବ ନାହିଁ । ମନ ଶାନ୍ତ ହେଲେ ଈଶ୍ୱର ଆଡ଼କୁ ଦଉଡ଼େ, ଉତ୍ତେଜିତ ହୋଇ ବିକୃତ ହେଲେ ଅବାଟରେ ଯାଏ, ଏହି ହେତୁ ଖାଦ୍ୟ ସଙ୍ଗେ ଧର୍ମର ସମ୍ପର୍କ ।

ସ୍ତ୍ରୀ—ଏଥିରେ ଏତେ ଧର୍ମ୍ମ ଅଛି ? ଅଚ୍ଛା, ଖାଦ୍ୟ ଖାଇଲେ ମନ ଉତ୍ତେଜିତ ହୁଏ କପରି ?

ସ୍ୱାମୀ—ବାଘ କଥା ଶୁଣିଛ ? ସେ କଣ ଖାଏ ?

ସ୍ତ୍ରୀ—ବାଘ ମାଂସ ଖାଏ ।

ସ୍ୱାମୀ—ଛେଳି କଣ ଖାଏ ?

ସ୍ତ୍ରୀ—ଡାଳପତ୍ର, ଘାସ, କୁଣ୍ଡା ଖାଏ; ଫଳମୂଳ ଖାଏ ।

ସ୍ୱାମୀ—ଅଚ୍ଛା କହ ତ ବାଘ ଭଲ କି ଛେଳି ଭଲ ?

—ଓଲୋ ବାପଲୋ ! ବାଘ କିଆଁ ଲଗାଡ଼ି ମଣିଷ ଖାଏ, ବାଘ ମୁହଁ ଦେଖିଲେ ଛାତି ଥରବ, ବାଘଟା ଯେପରି ରାଗୀ, ଯେଉଁ ଜୀବ ହାତରେ ପଡ଼ିଲା ତାକୁ ମାରି ଖାଇଦେବ ! ଛେଳି ବପୁର ଘରେ ଥାଏ, ପାଖରେ ଶୁଏ, ତା ଦୁଧ ଖାଇ ପିଲାଏ ବଞ୍ଚନ୍ତି— ତାହା ସଙ୍ଗେ କାହାକୁ ସରି କରୁଛ ମ ?

ସ୍ୱାମୀ—ମୁଁ ତ ସେହି କଥା ବୁଝାଇବା ଲାଗି ବାଘ ଛେଳି କଥା କହିଲି ! ବାଘ ମାଂସ ଖାଇ ତା ପ୍ରକୃତି କପରି ? ଛେଳି ଫଳ ପତ୍ର ଖାଏ, ତା ପ୍ରକୃତି କପରି ? ଏଥିରୁ ବୁଝିବ ଯେ କପରି ଖାଦ୍ୟ ଖାଇଲେ ପ୍ରକୃତି କପରି ହୁଏ ।

ସ୍ତ୍ରୀ—ଏତେବେଳକୁ ବୁଝିଲି ।

ସ୍ୱାମୀ—କେଉଁ ଖାଦ୍ୟ ଖାଇଲେ କେଉଁ ରିପୁ ଉତ୍ତେଜିତ ହୁଏ; ପୁଣି କେଉଁ ଖାଦ୍ୟ ଖାଇଲେ ସେହି ରିପୁ ଶାନ୍ତ ହୁଏ, ସେ ସମସ୍ତ ଶାସ୍ତ୍ରରେ ଲେଖା ଯାଇଛି । ନିମ୍ବ ପ୍ରଭୃତି ପିତା ପଦାର୍ଥ ଖାଇଲେ କାମ ଲୋପ ହୁଏ, ମାଛ ମାଂସ ଖାଇଲେ କାମ ଉତ୍ତେଜିତ ହୁଏ ।

ସ୍ତ୍ରୀ—ତେବେ କପରି ଆହାର କେଉଁ ଗୁଣକୁ ବଢ଼ାଏ, ସେ କଥା ଜାଣିବା କପରି ?

ସ୍ୱାମୀ—୧ । ଫଳମୂଳ, ଅତପାକ ଅର୍ଥାତ୍ ଅରୁଆ ଅନ୍ନ, ଘୃତ, ଦୁଗ୍ଧ
ଇତ୍ୟାଦି ସତ୍ତ୍ୱଗୁଣ ବୃଦ୍ଧିକାରକ; ସୁତରାଂ ଏ ଗୁଡ଼ିକ ସାତ୍ତ୍ୱିକ
ଆହାର ।

୨ । ଅତି ପିଠା, ଅତି କଷା, ଅତି ଲୁଣିଆ, ଅତି ଉଷ୍ଣ,
ଅତି ରାଗ, ମତ୍ସ୍ୟ, ମାଂସ, ମଦ୍ୟ ପ୍ରଭୃତି ମାଦକ ଦ୍ରବ୍ୟ ଇତ୍ୟାଦି
ରଜୋଗୁଣ ବର୍ଦ୍ଧକ; ସୁତରାଂ ଏଗୁଡ଼ିକ ରାଜସିକ ଆହାର ।

୩ । ପଚ୍ଚା ପଦାର୍ଥ, ଶୁଖିଲା ପଦାର୍ଥ, ଗନ୍ଧିଆ ଜିନିଷ, ବାସି
ଜିନିଷ, ଅଇଁଠା ଜିନିଷ, ଅପବିତ୍ର ପଦାର୍ଥ, ପଖାଳ ଭାତ
ପ୍ରଭୃତି ତମୋଗୁଣ ବୃଦ୍ଧିକାରକ; ସୁତରାଂ ଏଗୁଡ଼ିକ ତାମସିକ
ଆହାର ।

ସ୍ତ୍ରୀ—ଏତେ ପାଠ ଆମେ ମାଇପେ କପରି ଜାଣିବୁ ମ ? ଦ୍ରବ୍ୟ ଗୁଣ
ନ ଜାଣିଲେ କପରି ହେବ ?

ସ୍ୱାମୀ—ପାଠ ପଢ଼ିବା କିଛି ଆବଶ୍ୟକ ନାହିଁ, ପୂର୍ବେ ଋଷିମାନେ
ଖାଦ୍ୟାଖାଦ୍ୟ ବିଷୟ ନିଷ୍ଟୟ କରିଅଛନ୍ତି, ତାକୁ ସନ୍ଦେହ ନ
କରି ଚଳିଲେ ହେଲା ! କେଉଁ ଦିନ କଣ ଖାଇବ ନ ଖାଇବ,
ତାହା ପର୍ଯ୍ୟନ୍ତ ପାଞ୍ଜିରେ ଲେଖା ଅଛି । ବିଧବା ମାଇପେ କଣ
ଖାଇବେ, ସଧବା କଣ ଖାଇବେ, ବ୍ରାହ୍ମଣ କଣ ଖାଇବ
ଇତ୍ୟାଦି କଥା ଶାସ୍ତ୍ରରେ ଲେଖା ଅଛି । ସେଗୁଡ଼ାକ ତ ମିଛ
କଥା ନୁହେଁ ! ଶାସ୍ତ୍ର ମାନି ଚଳିଲେ ହେଲା ।

ସ୍ତ୍ରୀ—ଖାଇବା ପିଇବାରେ ପୁଣି ଏତେ ପାଠ ? ସବୁ ଦେଶରେ
କଣ ଲୋକେ ଏ ପାଠ ଅନୁସାରେ ଚଳନ୍ତି ?

ସ୍ୱାମୀ—ଏଥିରେ ଆଉ ଗୋଟିଏ କଥା ଅଛି; ଯେଉଁ ଦେଶରେ
ଯେଉଁ ଖାଦ୍ୟ ମିଳେ ଲୋକେ ତାହା ଖାଇ ଚଳନ୍ତି, ମାତ୍ର
ଖାଦ୍ୟ ଅନୁସାରେ ସେ ଦେଶରେ ଲୋକମାନଙ୍କ ପ୍ରକୃତି ମଧ୍ୟ

ସେହିପରି । ଦେବତା ରାକ୍ଷସ ମଧ୍ୟରେ ପ୍ରଭେଦ କଣ ? ରାକ୍ଷସ-
ମାନଙ୍କର ଆହାର ଦେବତାମାନଙ୍କର ଆହାର ପୃଥକ୍ । ଦେଉଁ
ଦେବତାମାନଙ୍କର ମାଛ ମାଂସ ଭୋଗ ହେବାର କେବେ
ଶୁଣିଛ ?

ସ୍ତ୍ରୀ—ନା, ତେବେ କଣ ଦିଅଁଙ୍କଠାରେ ଯାହା ସବୁ ଭୋଗରାଗ ହୁଏ
ସେ ସବୁ ସାତ୍ତ୍ୱିକ ଆହାର ?

ସ୍ୱାମୀ—ନିଶ୍ଚୟ । ଜଗନ୍ନାଥ ଦେଉଳର ଭୋଗ ଦେଖିଲେ ଜାଣି
ହେବ, ସାତ୍ତ୍ୱିକ ଆହାର କଣ ? ଯାହା ସାତ୍ତ୍ୱିକ ଆହାର
ନୁହେଁ, ତାହା ଦେଉଳ ଭିତରକୁ ଯାଏ ନାହିଁ । ହାତ ଶଙ୍ଖା
ଦର୍ପଣି ଯାଏ ନାହିଁକି ? ଏତେ ପାଠ ନ ପଢ଼ି ଜଗନ୍ନାଥ
ଦେଉଳରୁ ଏ କଥା ବେଶ୍ ଶିକ୍ଷା କରାଯାଇ ପାରେ । ସ୍ତ୍ରୀ
ସହ-ଧର୍ମ୍ମିଣୀ, ସେ ଏଗୁଡ଼ିକ ବୁଝିଲେ ସହଜରେ ଆମ୍ଭ-
ମାନଙ୍କର ଧର୍ମ୍ମ ରକ୍ଷା ହେବ । ଆଜି ଏତିକି ଥାଉ ।

---

## ପଞ୍ଚଦଶ ପରିଚ୍ଛେଦ

ସ୍ତ୍ରୀ—ମଲି, ଏ ମୁଣ୍ଡପୋଡ଼ାଗୁଡ଼ାକ କୋଉଠି ଥାନ୍ତି ମ । ଧାନ ରାଡି
ଦାଉଡ଼ି ଦାଉଡ଼ି ମଣିଷ ହିକ୍କା କରି ଡାକିବାକୁ ବାହାରିଲା
ବେଳକୁ " ମାତା ହୋ, ଖାଇବାକୁ ଗଣ୍ଡିଏ ଦିଅ" କହି
ଦୁଆରେ ହାଜର । ଯା—ଯା ଇଚ୍ଛା ତା ହେଉ, ମୁଁ କିଛି କରି
ପାରିବି ନାହିଁ ।

ସ୍ୱାମୀ—(ପ୍ରବେଶ) କଣ କହୁଛ ମ ?

ସ୍ତ୍ରୀ—ଚୁଲିମୁଣ୍ଡ କହୁଛ । କହୁଛି ମୋ ପୋଡ଼ା କପାଳ କଥା । କଥା ଦେଖୁଛ ତ ସାରାଦିନ ଟିକିଏ କଡ଼ ଲେଉଟାଇବାକୁ ଫୁରୁସତ ନାହିଁ, ରାତିରେ ଟିକିଏ ଶୋଇବାକୁ ବାହାରିଲାବେଳକୁ ଗୁଣର ଗୁଣମଣି ଆସି କହିଲେ—ଦୁଆରେ ଜଣେ ଅଭ୍ୟାଗତ ଠିଆ ହୋଇଛି, ସେ କଣ ଖାଇବ; ଏଥିରେ କାହା ମନ ଛିଡ଼ିବ କହିଲ ଭଲା ?

ସ୍ୱାମୀ—ଅଚ୍ଛା, ତମେ ଏପରି ଚିଡ଼ ନାହିଁ, ଯେଉଁଠି ଯାହା ଅଛି ମୁଁ ସବୁ କରିଦେବି ।

ସ୍ତ୍ରୀ—କର, ଭଲ ମଜା କଲ; ସବୁ ଘରେ ତ ସବୁ ଅଛି, ଚାଲ ମାନିଆ କାଢ଼ି ଆଣ !

ସ୍ୱାମୀ—କୁଞ୍ଚିଟା ଦିଅ !

ସ୍ତ୍ରୀ—( ସ୍ୱାମୀ କୁଞ୍ଚି ନେଇ ଘର ଭିତରକୁ ଯିବାର ଦେଖି ଅପ୍ରସ୍ତୁତ ହୋଇ ନରମ ହୋଇ ) ଥାଉ ଥାଉ ଯାଅ, ତମେ ତ ସବୁ କରି ପକାଇବ, ମୁଁ ଦେଉଛି ଯାଅ !

ସ୍ୱାମୀ—ଛି ଛି, ଏ କାମ କାହିଁକି କରିବ ମ ? ଅଭ୍ୟାଗତ ତମ ଭାଇ ବନ୍ଧୁ କୁଟୁମ୍ବ ନୁହେଁ, ତା ଲାଗି ଏତେ କଷ୍ଟ ପାଇବ କାହିଁକି ?

ସ୍ତ୍ରୀ—ସେ କଣ ତମର ଭାଇ ବନ୍ଧୁ ?

ସ୍ୱାମୀ—ସେ ମୋର ଭାଇ ବନ୍ଧୁଠାରୁ ବଡ଼, ସେ ତ ଦେବତା !

ସ୍ତ୍ରୀ—ତାହାଲେ, ଭକ୍ତି-ଶଗଡ଼ ଛୁଟି ପଡ଼ୁଛି !

ସ୍ୱାମୀ—ଆଉ କାହିଁ ଭକ୍ତି-ଶଗଡ଼ ଛୁଟୁଛନ୍ତା, ସବୁ ଦିନେ ମୁଁ ଅତିଥିଙ୍କି ଦେବତା ବୋଲି ମନେ କରେ ।

ସ୍ତ୍ରୀ—ଯାଅ, ଭକ୍ତି କର, ଆମର ଏତେ ଧର୍ମ କର୍ମରେ କାମ କଣ ?

ସ୍ୱାମୀ—ତମର କଣ ଗୋଟାଏ ଅଲଗା ଧର୍ମ ଅଛି କି ?

ସ୍ତ୍ରୀ—ମୁଁ କଣ ସେ କଥା କହିଲି ? ମୁଁ କହିଲି—ମୁଁ ଏତେ ପାଇଟି ପାରିବି ନାହିଁ ।

ସ୍ୱାମୀ—ତେବେ ସହଧର୍ମ୍ମିଣୀ କାମ ଇସ୍ତଫା ଦିଅ ।

ସ୍ତ୍ରୀ—ସେଥିରେ ଆପତ୍ତି ନାହିଁ ! ଯେ ଯେପରି କାମକୁ ପାରିବ ସେ ସେପରି ପଦ ପାଇବ ! ଯେ ଯାହା ନ ପାରିବ ସେ ଗୋଟିଏ ବଡ଼ ପଦ ମୁଣ୍ଡରେ ବସିବ କାହିଁକି ? ମୋର "ସହଧର୍ମ୍ମିଣୀ" ପଦ ମୁଣ୍ଡାଇବା ଆବଶ୍ୟକ ନାହିଁ, ମୁଁ ଜନମ ଦାସୀ ହେବ ପଛକେ ଏତେ ବଡ଼ ପଦକୁ ପାଇବି ନାହିଁ !

ସ୍ୱାମୀ—ତେବେ ଖବରକାଗଜରେ ନୋଟିସ ଦେବା—ଏ ପଦ ଖାଲି ଅଛି, କିଏ ଦରଖାସ୍ତ ଦେବ ଦେଉ !

ସ୍ତ୍ରୀ—ଆନନ୍ଦରେ ଦିଅ । ଅନେକ ଲୋକ ଦରଖାସ୍ତ ଦେବେ, କିନ୍ତୁ—

ସ୍ୱାମୀ—କିନ୍ତୁ କଣ ?

ସ୍ତ୍ରୀ—କିନ୍ତୁ କାମ ଚଳାଇପାରିବା ଲୋକ ବେଶି ମିଳିବେ ନାହିଁ !

ସ୍ୱାମୀ—ତା ନ ମିଳିଲେ ବେଳେ ବିଚାର କରାଯିବ ।

ସ୍ତ୍ରୀ—ଥାଉ ଗୋ, ଆଉ ଏତେ ରସିକତାକୁ ପାରିବି ନାହିଁ ! ଯାଅ ଯାଅ, ଅତିଥି ତ ଭୋଜନ କରିବ, ଆଉ ଏତେ କଥା ଲାଗିଛି କାହିଁକି ? ତେମେ ଯାଅ ଶୁଅ !

ସ୍ୱାମୀ—ଅତିଥି ସେବା ସରିବା ଯାଏ ଶୋଇବା ଉଚିତ ନୁହେ । ତୁମେ ଜାଣ ଗୃହସ୍ଥାଶ୍ରମ ବଡ଼ କଠିନ ।

ସ୍ତ୍ରୀ—ଯାହା ହେଉ ମୁଁ ପ୍ରଥମରୁ ମନା କରି ନ ଥିଲେ ଅଧାଯାଏ ପୁରାଣ ଶୁଣାନ୍ତି କିପରି ? କହ ଗୃହସ୍ଥାଶ୍ରମ କଣ ?

ସ୍ୱାମୀ—ଗୃହସ୍ଥର ଗୃହ ଗୋଟିଏ ଆଶ୍ରମ; ସୁତରାଂ ଏହାକୁ ଗୃହସ୍ଥାଶ୍ରମ କହନ୍ତି । ଧର୍ମ୍ମ କର୍ମ୍ମ କରିବା ଲାଗି ଗୃହସ୍ଥ ଗୋଟିଏ ଆଶ୍ରୟ ଗ୍ରହଣ କରେ, ତାହା ଗୃହସ୍ଥାଶ୍ରମ । ସୁଖ ଭୋଗ ଗୃହସ୍ଥାଶ୍ରମର ଉଦ୍ଦେଶ୍ୟ ନୁହେ । ଗୃହରେ ରହିଲେ କିପରି ଧର୍ମ୍ମ କାର୍ଯ୍ୟ

କରିବାକୁ ହୁଏ, ମନୁ ତାହା ଲେଖି ଯାଇଛନ୍ତି—ନାନାପ୍ରକାର ପାପରୁ ମୁକ୍ତ ପାଇବା ଲାଗି ଗୃହସ୍ଥ ପ୍ରତିଦିନ ପାଞ୍ଚଗୋଟି ଯଜ୍ଞ କରିବ ।

୧ । ବ୍ରହ୍ମ ଯଜ୍ଞ—ଅର୍ଥାତ୍ ପ୍ରତିଦିନ ଧର୍ମ ଶାସ୍ତ୍ର ପଢ଼ିବ ଓ ଅନ୍ୟକୁ ଉପଦେଶ ଦେବ ।

୨ । ପିତୃ ଯଜ୍ଞ—ଅନ୍ନପାନାଦି ଦ୍ୱାରା ପିତୃଲୋକମାନଙ୍କୁ ତର୍ପଣ କରିବ ।

୩ । ଦେବ ଯଜ୍ଞ—ପ୍ରତିଦିନ ଟିକିଏ ହୋମ କରିବ ।

୪ । ଭୂତ ଯଜ୍ଞ—ପଶୁ ପକ୍ଷୀ ପ୍ରଭୃତିଙ୍କ ଲାଗି ଅନ୍ନ ପ୍ରଭୃତି ବଳି ଦେବ ।

୫ । ମନୁଷ୍ୟ ଯଜ୍ଞ—ଅତିଥି ସେବା ବା ଅଭ୍ୟାଗତ ସେବା ।

ଏ ସମସ୍ତଙ୍କର ଆଶ୍ରୟ ସ୍ଥଳ ଗୃହସ୍ଥ । ଗୃହସ୍ଥଠାରେ ସମସ୍ତଙ୍କର ଆଶା ଭରସା । ଆପଣା ଶକ୍ତି ବା ବଳ ମାପିକେ ଯାହାର ଯାହା ପଡ଼ନ୍ତା, ତାହା ଦେଇ ସେମାନଙ୍କୁ ସନ୍ତୁଷ୍ଟ କରିବ । ଅନେକ କଥା ପଥର ପରି ସହିବ, କାହାରିକି ନାରାଜ ବାଣୀ କହିବ ନାହିଁ । ଅତିଥି ଦୁଆରୁ ଫେରିଗଲେ ମହାପାପ, ସେ ଆପଣା ଗୃହସ୍ଥର ପୁଣ୍ୟ ନେଇ ଚାଲିଯାଏ ।

ସ୍ତ୍ରୀ—ଆଜ୍ଞା, ଯାହା ଘରେ କିଛି ନ ଥିବ ସେ କିପରି ଅତିଥି ସତ୍କାର କରିବ ?

ସ୍ୱାମୀ—ଯେତେ ଦରିଦ୍ର ହେଉ ପଛକେ, ଅତିଥି ଶୋଇବାକୁ କୁଟା କେରାଏ ଦେଇ ପାରିବ, ବସିବାକୁ ଭୂଇଁ ଦେଇ ପାରିବ, କୋମଳ କଥା କହି ସନ୍ତୋଷ କରି ପାରିବ—ଏଥିରେ ଖର୍ଚ୍ଚ ଲାଗିବ ନାହିଁ । ନିଜେ ଯାହା ଖାଇବ ଅତିଥିକି ତାହା ଦେବ । ଅତିଥିକି ଯେଉଁ ପଦାର୍ଥ ଦେଇ ନ ପାରିବ ତାହା ନିଜେ

ଖାଇବ ନାହିଁ । ଅତିଥି ପ୍ରସନ୍ନ ହେଲେ ଧନ, ଯଶ, ଆୟୁ, ସ୍ୱର୍ଗ ଲାଭ ହୁଏ ! ଅତିଥି ଭୋଜନ କରାଇଲେ ପାପ ଅନ୍ତର କରିବ ନାହିଁ ।

ସ୍ତ୍ରୀ—ଆଜ୍ଞା, ଏ ଯେଉଁ ଯଜ୍ଞ କଥା କହିଲ, ତାକୁ କଣ ମାଇପେମାନେ କରିପାରିବେ ?

ସ୍ୱାମୀ—ଯାଗଯଜ୍ଞ କରିବା କଥା କହୁ ନାହିଁ । ମାଇପେ ପରା ଆମର ସହଧର୍ମିଣୀ, ସେମାନେ ଏ କଥା ସବୁ ଜାଣି ନ ଥିଲେ ଆମକୁ ସାହାଯ୍ୟ କରିବେ କିପରି ?

ସ୍ତ୍ରୀ—ଆଜ୍ଞା ବୁଝିଲି, ଏସବୁ କରିବାକୁ ହେବ । ଅତିଥି ସେବାରେ ଏପରି ଧର୍ମ କଣ ଅଛି ?

ସ୍ୱାମୀ—ଜ୍ଞାନୀ ଲୋକମାନେ କରିବାକୁ କହିଯାଇଛନ୍ତି; ତାଙ୍କ ବାକ୍ୟକୁ ମତ ବୋଲି ମନେ କରି କାର୍ଯ୍ୟ କରାଯାଏ ! ଆଉ ଗୋଟିଏ କଥା ମନେ ହୁଏ—ସେବା ଧର୍ମ ପୃଥିବୀର ଗୋଟିଏ ଶ୍ରେଷ୍ଠ ଧର୍ମ । ଆପଣାକୁ ସେବକ ମନେ କରିବା ଓ ଭଗବାନଙ୍କର ସେବା କରିବା ଆଦର୍ଶ କାର୍ଯ୍ୟ । ଭଗବାନଙ୍କର ସେବା କରିବା ସହଜ କଥା ନୁହେ । ସାଧନା କଲେ ସିଦ୍ଧି ହୁଏ । ଆଜ୍ଞା, ତମେ ତ ଶୁଣିଥିବ 'ଭଗବାନ ବିରାଟ ପୁରୁଷ ! ଚିନ୍ତା କରି ଯାହାଙ୍କୁ ଧାରଣା କରି ପାରୁ ନାହିଁ, ଏପରି ପୁରୁଷଙ୍କ ସେବା କେଡ଼େ ବଡ଼ କଠିନ କାର୍ଯ୍ୟ ! ପୁଣି ଶୁଣିଥିବ ଭଗବାନ କାଷ୍ଠ, ପାଷାଣ, ତରୁ, ତୃଣ, ମନୁଷ୍ୟ ଆଦି ସବୁଠାରେ ବିରାଜମାନ; ସୁତରାଂ ମନୁଷ୍ୟର ସେବା କଲେ ଭଗବାନଙ୍କର ସେବା ହେଲା ! ଏଥିଲାଗି ମନୁଷ୍ୟର ସେବା କଲେ ସେବା-ଧର୍ମ ପ୍ରକାଶିତ ହୁଏ । ପୁଅ ପିତାମାତାଙ୍କ ସେବା କରିବ, ସ୍ତ୍ରୀ ପତିସେବା କରିବ, ଆଉ ସମସ୍ତେ ଗୁରୁସେବା କରିବେ । ଏହି ହେତୁ ସେବା ଧର୍ମ

ଶ୍ରେଷ୍ଠ ଧର୍ମ । ଦେଖ, ଯେଉଁମାନଙ୍କୁ ଲୋକ ଅପଣାର ବୋଲି ମନେ କରେ, ସେମାନଙ୍କ ସେବା କରିବା ବେଳେ କିଛି ପ୍ରତ୍ୟୁପକାର ପାଇବାର ଆଶା କରେ; ଅର୍ଥାତ୍ ପୁଅ ସେବା କଲେ ଏ ପ୍ରଧାନ ହୋଇ ମୋତେ କିଛି ଧନ ଦାନ ଦେବ । ଅତଏବ ଯାହାର ସେବା କଲେ ତାହାଠାରୁ କିଛି ପାଇବାର ଆଶା ଥିବ, ତାହା ନିଷ୍କାମ ହେଲା ନାହିଁ । ନିଷ୍କାମ ସେବା-ଧର୍ମ ପାଳନ କରିବାକୁ ହେଲେ ନିଃସମ୍ପର୍କୀୟ ଅପରିଚିତ ଲୋକର ସେବା ଆବଶ୍ୟକ । ଏହି କାରଣରୁ ଅତିଥି ଯାହାର କାହା ସମ୍ବନ୍ଧ ନାହିଁ, ଚିହ୍ନା ପରିଚୟ ନାହିଁ, ତାହାଠାରୁ କିଛି ଉପକାର ପାଇବାର ଆଶା ନାହିଁ; ଅତଏବ ଏପରି ଲୋକର ସେବା କରିବା ପରମ ଧର୍ମ ।

ସ୍ତ୍ରୀ—ଆଚ୍ଛା ବୁଝିଲି, ଅତିଥି ସେବା ପରମ ଧର୍ମ । ଅତିଥି କାହାକୁ କହନ୍ତି ?

ସ୍ୱାମୀ—ମନୁ କହିଛନ୍ତି, ଯେ କେବଳ ଏକ ରାତି ପରଗୃହରେ ବାସ କରେ, ତାହାର ନାମ ଅତିଥି । ଅନିତ୍ୟ ସ୍ଥିତି ଯାହାର ସେ ଅତିଥି । ଜ୍ଞାନୀ, ନିଃସମ୍ପର୍କୀୟ, ଅଳ୍ପକାଳସ୍ଥାୟୀ ଲୋକକୁ ଅତିଥି କୁହାଯାଏ । ଗୁଣୀ ଥିବ, ଅଳ୍ପ ସମୟ ରହିବ, ଅଥଚ ଆମ ସଙ୍ଗେ ତାର କିଛି ସମ୍ପର୍କ ନାହିଁ, ଏପରି ଲୋକର ସେବା କଲେ ପରମ ଧର୍ମ ହୁଏ ଏବଂ ଅଳ୍ପେ ଅଳ୍ପେ ସେବା ଧର୍ମର ଶିକ୍ଷା ହୁଏ । ଏଥିରୁ ଆଉ ଗୋଟାଏ କଥା ଶିଖିବ । ଅତିଥି ଅଗ୍ରପୂଜନୀୟ ହୋଇଥିବ, ଅର୍ଥାତ୍ ତାର ଅନ୍ୟ କିଛି ସାହା ଭରସା ନ ଥିବ, ଏପରି ଲୋକର ସେବା ଅଗେ କରିବା କର୍ତ୍ତବ୍ୟ । ଏ ପ୍ରକାର ଅତିଥି ଦେବତା ତୁଲ୍ୟ ।

ବନ୍ଧୁ ବାନ୍ଧବ, ଜ୍ଞାତି କୁଟୁମ୍ବ, ଗୁରୁ ପ୍ରଭୃତି ଲୋକମାନେ ଆସିବେ ଏବଂ ଯାହା ସାଥିରେ ଭାର୍ଯ୍ୟା ଓ ଅଗ୍ନି ଥିବ ସେମାନେ ଅତିଥି ନୁହନ୍ତି ।

ସ୍ତ୍ରୀ—ଲୋକେ ଅତିଥି ଛଡ଼ା ଅଉ ଯେ ଆସିବ ବା ମାଗିବ, ତାକୁ ଦେବ ନାହିଁ, ବାଡ଼େଇ ବାହାର କରିଦେବ ?

ସ୍ୱାମୀ—ସେ କଥା ତ ମୁଁ କହୁ ନାହିଁ ; ଅନ୍ନଦାନ ମଧ୍ୟ ପରମ ଧର୍ମ, କିନ୍ତୁ ଉପଯୁକ୍ତ ପାତ୍ରରେ ଦେଲେ ଧର୍ମ ।

ସ୍ତ୍ରୀ—ଉପଯୁକ୍ତ ପାତ୍ର ଅର୍ଥ ପୁଣି କଣ ମ ?

ସ୍ୱାମୀ—ଯେଉଁ ଲୋକଙ୍କୁ ଦେଲେ ଧର୍ମ ହୁଏ, ଅର୍ଥାତ୍ ଯେ ଅସମର୍ଥ ହୋଇଥିବ, ଯେପରି କଣା, କୁଜା, ଛୋଟା, ରୋଗୀ, ଯେ ନିଜେ କାର୍ଯ୍ୟ କରି ଖାଇ ପାରିବ ନାହିଁ, ଯାହାର ଅନ୍ୟ କେହି ଅଶ୍ରା ଭରସା ନ ଥିବ, ଯାହାର ନିଜର ଧନ ଦ୍ରବ୍ୟ ନ ଥିବ, ଏପରି ଲୋକ ଦାନର ଉପଯୁକ୍ତ ପାତ୍ର । ଏପରି ଲୋକଙ୍କୁ ମୁଠିଏ ଦେଲେ ଉପରକୁ ପୁଣ୍ୟ ହୋଇଥିବ ।

ସ୍ତ୍ରୀ—ଯାହାକୁ ଥିବ, ସେ କଣ କେବେ ଆସି ହାତ ପତାଇ ମାଗିବ ?

ସ୍ୱାମୀ—ଏପରି ଅନେକ ଲୋକ ଅଛନ୍ତି ବିଶେଷତଃ ଆମ ଦେଶରେ ! ଅନେକ ଭିକ ଦିଅନ୍ତି ବୋଲି କେତେ ଲୋକ ବଳ ଥିଲେ ତ କାମ କାର୍ଯ୍ୟ ନ କରି ଅଲସୁଆ ପଣରେ ଭିକ ମାଗି ବୁଲନ୍ତି । ଦେଖିବ, ଯୋଗୀ, ଚକୁଳିଆପଣ୍ଡା ଓ ବେଲା ପ୍ରଭୃତି ଯେତେ ଜାତି ଅଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ଜମିବାଡ଼ି ଅଛି, ଘରଦ୍ୱାର ଅଛି, ମାତ୍ର ଭିକ ମାଗି ବୁଲନ୍ତି, ଅନ୍ୟ କାମ କରିବାକୁ ତାଙ୍କୁ ଲାଜ ମାଡ଼େ । ଏପରି ଲୋକଙ୍କୁ ଦେବା ଦ୍ୱାରା କିଛି ଧର୍ମ ନାହିଁ । ଅଧମ ଲୋକଙ୍କୁ ସାହାଯ୍ୟ କରିବା